ଆପଣଙ୍କ କେଶ
ଆବଶ୍ୟକ କରେ

# ରୀଠାର ଯତ୍ନ

**ରୀଠା** ଏକ ଉତ୍କୃଷ୍ଟ କେଶ ପ୍ରସାଧନ ସାମଗ୍ରୀ ଅତ୍ୟଧିକ ମାତ୍ରାର ନିର୍ଯ୍ୟାସରେ ପ୍ରସ୍ତୁତ ଓ ମନମତାଣିଆ ସୁଗନ୍ଧଯୁକ୍ତ । ଏହା ବଳାସମସ୍ତୀ ପ୍ରାକୃତିକ କେଶ ବଢ଼ାଇବା ଓ ମସ୍ତିଷ୍କ ଥଣ୍ଡା କରିବା ନିଶ୍ଚିତ । ରୀଠା ପୁରୁଷ ଓ ମହିଳା ଉଭୟଙ୍କ ପାଇଁ ଏକ ଆଦର୍ଶ ପ୍ରସାଧନ ଦ୍ରବ୍ୟ ।

## ରୀଠା

RITA
RITA
GROWS LOVELY HAIR

**ରୀଠା** ମନୋହର କେଶ ବଢ଼ାଏ
ଆଜି ଏକ ବୋତଲ କିଣନ୍ତୁ
ସବୁଠାରେ କିଣିବାକୁ ମିଳୁଛି

ଭେଟୋ କୋ:, ବମ୍ବେ * କଲିକତା * ମାନ୍ଦ୍ରାଜ



# ଜହ୍ନମାମୁଁ

ଜୁଲାଇ ୧୯୮୭



## ବିଷୟ-ସୂଚୀ






ପ୍ରତି ସଂଖ୍ୟା : ୨-୫୦
ବାର୍ଷିକ ମୂଲ୍ୟ : ୩୦-୦୦

# ଆପଣଙ୍କ ଶିଶୁକୁ ଦିଅନ୍ତୁ:
# ସେରେଲାକ୍‌ର ଅଦ୍ୱିତୀୟ ଲାଭ



## ବହୁଳିଆ ଘନ ଆହାର ରୂପେ ଏଠେ ଆଦର୍ଶ ଆରମ୍ଭ !

ଆପଣଙ୍କ ଶିଶୁଟି ପ୍ରାୟ ୪ ମାସର ହୋଇଗଲେ, ତା'ପାଇଁ ଦରକାର ହୁଏ, ଦୁଧ ସଙ୍ଗେ ସଙ୍ଗେ ବହୁଳିଆ ଘନ ଆହାର । ତାକୁ ସେରେଲାକ୍‌ର ଅଦ୍ୱିତୀୟ ଲାଭ ମିଳିବାର ଏ ହେଉଛି ଉପଯୁକ୍ତ ସମୟ ।

**ପୁଷ୍ଟି ସାଧନର ଲାଭ :**
ସେରେଲାକ୍‌ର ପ୍ରତ୍ୟେକ ଆହାର, ଆପଣଙ୍କ ଶିଶୁ ଦରକାର କରୁଥିବା ସମସ୍ତ ପୁଷ୍ଟିକାରୀ ଗୁଣ ଯୋଗାଇଥାଏ, ଯଥା—ପ୍ରୋଟିନ, ଶ୍ୱେତସାର, ଚର୍ବି, ଭିଟାମିନ ତଥା ଖଣିଜସାର । ଶିଶୁର ବିଶେଷ ଆବଶ୍ୟକତା ଅନୁଯାୟୀ ସେରେଲାକ୍‌ରେ ସବୁ କିଛି ପୋଷଣକ୍ଷମ ଗୁଣ ସୁଷମଭାବେ ତଥା ସଠିକ ଅନୁପାତରେ ରହିଛି ।

**ଆସ୍ୱାଦ ଲାଭ :**
ସେରେଲାକ୍ ଅଧିକ ପୁଷ୍ଟିକର ହେବା ସଙ୍ଗେ ସଙ୍ଗେ ଭାରି ରୁଚିକର ମଧ୍ୟ । ଏହାର ଅପୂର୍ବ ସ୍ୱାଦ ଶିଶୁମାନଙ୍କୁ ବହୁତ ଭଲ ଲାଗେ ।

**ସମୟ ବଞ୍ଚାଇବାର ଲାଭ :**
ସେରେଲାକ୍ ଆଗରୁ ହିଁ ପାକକଷ ହୋଇ ସାରିଛି ଏବଂ ଏଥିରେ ଦୁଧ ଓ ଚିନି ମିଶାଯାଇ ରହିଛି । ଏହାକୁ ଅଳପ ଫୁଟା ଯାଇଥିବା ଉଷୁମ ପାଣିରେ ମିଶାନ୍ତୁ, ଦେଖିବେ, ଅଳ୍ପକ୍ଷଣରେ ଶିଶୁ ପାଇଁ ଆହାର ପ୍ରସ୍ତୁତ ହୋଇଗଲେ ।

**ପସନ୍ଦ ଲାଭ :**
ଆହାର ସମୟକୁ ଅଧିକ ସୁଖକର କରେଇବାକୁ, ଶିଶୁମାନଙ୍କ ପସନ୍ଦ ପାଇଁ ଦୁଇ ପ୍ରକାର ସେରେଲାକ୍ ରହିଛି । ୪ ମାସରୁ ଶିଶୁକୁ ସେରେଲାକ୍ ହ୍ୱିଟ ଏବଂ ୬ ମାସରୁ ସେଥିରେ ନୂଆ ସେରେଲାକ୍ ଯୋଗକରି ଦିଅନ୍ତୁ ।

ଦୟାକରି ଡବା ଉପରେ ଲେଖାଥିବା ନିର୍ଦ୍ଦେଶାବଳୀକୁ ଯତ୍ନ ସହକାରେ ପାଳନ କରନ୍ତୁ, ଯାହା ଫଳରେ ଏହି ଶିଶୁଖାଦ୍ୟ ପ୍ରସ୍ତୁତ କରିବାର ଶୁଦ୍ଧତା ବଜାୟ ରହିବ ଏବଂ ଆପଣଙ୍କ ଶିଶୁକୁ ମିଳିବ,— ସ୍ୱାସ୍ଥ୍ୟ ଓ ସୁଷମ ପୁଷ୍ଟିକର ଆହାର ।

ମାଗଣାରେ
ଶିଶୁର ହେଲଥ ରେକର୍ଡ ବୁକ ପାଇଁ
ଏହି ଠିକଣାରେ ଚିଠି ଲେଖନ୍ତୁ :—
ସେରେଲାକ୍
ପୋଷ୍ଟ ବକ୍ସ ନଂ 3
ନୂଆ ଦିଲ୍ଲୀ-110008










## ସେରେଲାକ୍‌ର ପ୍ରତିଶ୍ରୁତି : ସ୍ୱାଦ ଯୁକ୍ତ-ସମ୍ପୂର୍ଣ୍ଣ ପୁଷ୍ଟି ସାଧନ ।

RK SWAMY/FSL/4757 OR




# CHANDAMAMA

It unfolds the glory of India—both past and present—through stories, month after month.

Spread over 64 pages teeming with colourful illustrations, the magazine presents an exciting selection of tales from mythology, legends, historical episodes, glimpses of great lives, creative stories of today and knowledge that matters.

**In 12 languages and in Sanskrit too.**

Address your subscription enquiries to:

**DOLTON AGENCIES** 188 N.S.K. ROAD MADRAS-600 026




# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍‌ଡୀ

ଆଜି 'ଜହ୍ନମାମୁଁ' ଏକବିଂଶ ବର୍ଷରେ ପଦାର୍ପଣ କରୁଛି । ଆଜି କୃତଜ୍ଞ ଭାବରେ ଓଡ଼ିଶାର ସହର ନଗର ପୁରପଲ୍ଲି ସର୍ବତ୍ର ବ୍ୟାପ୍ତ ଏହାର ଅସଂଖ୍ୟ ପାଠକ-ପାଠିକାଙ୍କୁ ସ୍ମରଣ କରିବା ପତ୍ରିକାଟି ପକ୍ଷରେ ସ୍ୱାଭାବିକ । ସେମାନଙ୍କର ମଙ୍ଗଳ ହେଉ । 'ଜହ୍ନମାମୁଁ' ସେମାନଙ୍କୁ ଆନନ୍ଦ ଦେଉଥାଉ । 'ଜହ୍ନମାମୁଁ' ସେମାନଙ୍କ ଶୁଭେଚ୍ଛା କାମନା କରୁଛି ।

## ଅମରବାଣୀ

ଯଃ ସମୁତ୍ପତିତଂ କ୍ରୋଧଂ, କ୍ଷମୟୈବ ନିରସ୍ୟତି ।
ଯଥୋରଗସ୍ତ୍ୱଚଂ ଜୀର୍ଣ୍ଣାଂ, ସ ବୈ ପୁରୁଷ ଉଚ୍ୟତେ ॥

[ସଚ୍ଚା ମଣିଷ ସିଏ, ଯିଏ ସାପ ପୁରୁଣା ଚମ ଛାଡିଲା ଭଳି ନିଜର କ୍ରୋଧକୁ ଅବଲୀଳା କ୍ରମେ ଛାଡି ଦେଇ ପାରେ—କ୍ଷମା ଭାବ ପ୍ରକାଶ କରିବା ଦ୍ୱାରା ।

ବର୍ଷ : ୨୧ ଜୁଲାଇ ୧୯୮୭ ଅଙ୍କ : ୧

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦

## ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



### ଶୂନ୍ୟ ଗାଡ଼ି!

ଶୂନ୍ୟ ଗାଡ଼ି ନୁହେଁ, ଶୂନ୍ୟରେ ଗତି କରିବା ରେଲ ଗାଡ଼ି! ବୋମ୍ବେରେ ଘଟ୍ଟେଇ ଓ ଆନ୍ତର୍ଜାତିକ ବିମାନ ବନ୍ଦର ଭିତରେ ଏଭଳି ଗୋଟିଏ ଗାଡ଼ି ଚଳାଇବାର ପ୍ରସ୍ତାବ ଅଛି। ଏହା ଚୁମ୍ବକ ଶକ୍ତିରେ ଶୂନ୍ୟରେ ଚାଲିବ।

### ଜଳ ଦୈତ୍ୟ?

ସ୍କଟ୍‌ଲାଣ୍ଡ୍‌ର ଲେଚ ନେସ୍ ଜଳଦାନବ କଥା ଶୁଣିଥିବ। ବର୍ତ୍ତମାନ ଚୀନ୍‌ର ଆଲତାଇ ପାର୍ବତ୍ୟ ଅଞ୍ଚଳର ଏକ ହ୍ରଦରେ ଥିବା ଦାନବଟିଏ ତୀରରୁ ଘୋଡ଼ାମାନଙ୍କୁ ଉଠାଇ ଖାଇ ଯିବାର ଖବର ମିଳୁଛି। ଏ ଦାନବ ଏକ ବିଶାଳକାୟ ଲଲ୍ ସାଲମୋନ୍ ମାଛ ବୋଲି ବୈଜ୍ଞାନିକମାନଙ୍କ ଅନୁମାନ।





### ମାରାଥନ ଗପୁଡ଼ି

ଅନର୍ଗଳ ଏକ ଶହ ପଚିଶଟି ଘଣ୍ଟା ଗପି କାଡାଲୋର୍ (ତାମିଲ୍‌ନାଡୁ)ର ସତାବନ ବର୍ଷ ବୟସ୍କ ଜୟରାମନ୍ କଥା କହିବାରେ ନୂଆ ବିଶ୍ୱରେକର୍ଡ ସୃଷ୍ଟି କରିଛନ୍ତି।

### ଶତାୟୁ

ଜାପାନରେ ଶହେ ବର୍ଷରୁ ଅଧିକ ବୟସର ୧,୮୫୧ ଜଣ ବ୍ୟକ୍ତି ଅଛନ୍ତି। ଏ ବର୍ଷ ଏ ସଂଖ୍ୟା ଦୁଇହଜାର ଛୁଇଁବାର ଆଶା। ଜାପାନର ସବୁଠାରୁ ବୁଢ଼ୀ ନାରୀଙ୍କର ଜନ୍ମ ୧୮୭୭ର ଏପ୍ରିଲ୍‌ରେ ହୋଇଥିଲା। ବର୍ତ୍ତମାନ ତାଙ୍କୁ ଶହେ ଦଶ।



# ଭୃଗୁ

ବ୍ରହ୍ମାଙ୍କ ପୁତ୍ର ଭୃଗୁ ଥିଲେ ଜଣେ ମହାନ୍ ଋଷି । ଥରେ ଅନ୍ୟ ଋଷିମାନେ ତାଙ୍କୁ ପଚାରିଲେ, "ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର, ଏମାନଙ୍କ ଭିତରୁ କାହାକୁ ମୋଟେ ରଗାଇବା ସମ୍ଭବପର ନୁହେଁ ?" ଭୃଗୁ ଏ ପ୍ରଶ୍ନର ଉତ୍ତର ପାଇବା ପାଇଁ ବାହାରିଲେ ।

ପ୍ରଥମେ ଭୃଗୁ ଯାଇ ବ୍ରହ୍ମା ଓ ଶିବଙ୍କ ପ୍ରତି ଅସମ୍ମାନଜନକ ବ୍ୟବହାର କଲେ । ଦୁଇ ମହାନ୍ ଦେବ ବିରକ୍ତିର ଲକ୍ଷଣ ପ୍ରକାଶ କଲେ । ତା'ପରେ ଭୃଗୁ ଯାଇ ବିଷ୍ଣୁଙ୍କ ପାଖରେ ପହଞ୍ଚିଲେ । ସେତେବେଳେ ବିଷ୍ଣୁ ଶୋଇଥିଲେ । "ସୃଷ୍ଟି ସଞ୍ଚାଳନ କାମ ମୁଣ୍ଡ ଉପରେ ଥାଉଁ ଥାଉଁ ତମେ ଶୋଇଛ କେଉଁ ସାହସରେ ?" ଏହା କହି ଭୃଗୁ ବିଷ୍ଣୁଙ୍କ ଛାତିରେ ଗୋଇଠା ମାରିଲେ ।

ଏତେ ଭୀଷଣ ଅପମାନଜନକ କାମଟିଏ କରି ଭୃଗୁ ନିଜେ ଶଙ୍କି ଯାଇ ଅପେକ୍ଷା କରୁଥାନ୍ତି । ବିଷ୍ଣୁ କ୍ରୁଦ୍ଧ ହୋଇ ତାଙ୍କ ପ୍ରତି କିପରି ବ୍ୟବହାର କରିବେ, ସେ ତାହା ଜାଣିବାକୁ ଉତ୍କଣ୍ଠିତ ହେବା ସ୍ୱାଭାବିକ ଥିଲା ।

"ତମ ପାଦରେ କଷ୍ଟ ହେଲା ନାହିଁ ତ ?" ବିଷ୍ଣୁ ଚଟାପଟ ଉଠି ବସି ଅତି ମଧୁର ଭାବରେ ଏହି ପ୍ରଶ୍ନ ପଚାରିଲେ । ସେତିକି ନୁହେଁ, ସେ ନିଜ ବକ୍ଷରେ ସେ ପାଦଚିହ୍ନ ଚିରଦିନ ପାଇଁ ଧାରଣ କରି ରଖିଲେ । ଏହାକୁ କୁହାଯାଏ ଶ୍ରୀବତ୍ସ ଚିହ୍ନ । ଏହା ଭକ୍ତ ପ୍ରତି ବିଷ୍ଣୁଙ୍କ ସମ୍ପୂର୍ଣ୍ଣ ଅପରିବର୍ତ୍ତନୀୟ ପ୍ରେମର ପ୍ରତୀକ ।

ବିଷ୍ଣୁଙ୍କର ଏହି ବ୍ୟବହାର ନମ୍ରତାର ଚରମ ପରାକାଷ୍ଠା ହିସାବରେ ଅମର ରହିଛି ।





# ପିତା ଓ ପୁତ୍ର

କୈଳାସପୁରରେ ଥିଲେ ଶିବଶଙ୍କର । ସେ ଥିଲେ ରାଜାଙ୍କ ଦରବାରରେ ଜଣେ କବି । କିନ୍ତୁ ସେ ଏଭଳି ନରମ ସ୍ୱଭାବର ଲୋକ ଯେ ସେ କେବେ ବି ନିଜ ବିଦ୍ୟାକୁ ଜାହିର୍ କରୁ ନଥିଲେ । ତେଣୁ ସେ ଅନ୍ୟ କବି ବା ପଣ୍ଡିତଙ୍କ ଭଳି ଲୋକ ଲୋଚନକୁ ବିଶେଷ ଭାବରେ ଆସି ପାରୁ ନଥିଲେ । ତାଙ୍କର ଉପାର୍ଜନର ପରିମାଣ ଅଧିକ ନଥିଲା । କିନ୍ତୁ ତାଙ୍କ ସ୍ତ୍ରୀ ରମା ଥିଲେ ଅତ୍ୟନ୍ତ କୁଶଳୀ, ଗୃହକର୍ମନିପୁଣା ନାରୀ । ସେ ଏପରି ଭାବରେ ସଂସାର ଚଳାଇ ନେଉଥିଲେ ଯେ ଅଭାବ ଅସୁବିଧା କଥା କେହି ବୁଝିପାରୁ ନଥିଲେ ।

ଶିବଶଙ୍କରଙ୍କର ଥିଲେ ଦୁଇ ପୁଅ । ବଡ଼ ପୁଅ ମହେନ୍ଦ୍ର, ଆଇନ ଅଧ୍ୟୟନ କରି ବଗୁରକଙ୍କ ପରାମର୍ଶଦାତା ରୂପେ ନିଯୁକ୍ତି ପାଇଥିଲା ଓ ନିଜ କାମରେ ଦକ୍ଷତାର ପରିଚୟ ଦେଇଥିଲା । ତା'ପରେ ଦୁଇ ଝିଅ । ଦୁହେଁ ଦୁଇଜଣ ସ୍ୱଚ୍ଛଳ ଯୁବକଙ୍କୁ ବିବାହ କରିଥିଲେ । ଯୁବକ ଦୁଇଜଣ ବ୍ୟବସାୟ କରୁଥିଲେ ।

ବାକି ରହିଲା ସାନ ପୁଅ ସୁଦର୍ଶନ । ସେ ବହୁତ କମ୍ କଥା କହୁଥିଲା । ସଦ୍ୟ ପାଠ ପଢ଼ା ଶେଷ କରିଥିଲା, କିନ୍ତୁ ତା' ପାଖରେ କୌଣସି ବିଶେଷ ଗୁଣ ଅଛି ବୋଲି କେହି ଭାବୁ ନଥିଲେ ।

ସୁଦର୍ଶନ କି କାମ କରିପାରିବ, ସେ ବିଷୟରେ ଶିବଶଙ୍କର ଚିନ୍ତା କରୁଥିଲେ । କଥା ହେଲା, ଅଧିକାଂଶ ବନ୍ଧୁବାନ୍ଧବଙ୍କ ଧାରଣା ହୋଇଥାଏ ଯେ ସୁଦର୍ଶନ ତା' ଭାଇ ବା ଭଉଣୀ ଭଣୋଇମାନଙ୍କ ଭଳି ସେତେ କର୍ମଦକ୍ଷ ନୁହେଁ ।

ଦିନେ ସୁଦର୍ଶନ ବଜାର ଭିତର ଦେଇ ଯାଉଛି, ବଜାର ଦାୟିତ୍ୱରେ ଥିବା ଜଣେ

"ପୃଥିବୀ ଭଳି ମହତ୍ ମାତା; ଆକାଶ ଭଳି ଗରୀୟାନ୍ ପିତା ।"



ରାଜକର୍ମଚାରୀ ସହ ତା'ର ଦେଖା ହୋଇଗଲା । ତା' ସହ ପରିଚୟ ଥିଲା । ଦୁହେଁ ଗପସପ ହୋଇ ଚାଲି ଚାଲି ଦୁଇଟି ବାଇଗଣ ଦୋକାନ ଆଗରେ ପହଞ୍ଚିଲେ । ଗୋଟିଏ ଦୋକାନରେ ବାଇଗଣ ଦାମ କମ୍, ଅନ୍ୟଟିରେ ଅଧିକ । ଅବଶ୍ୟ ଦ୍ୱିତୀୟ ଦୋକାନରେ ଥିବା ବାଇଗଣ ସତେଜ ଥିଲା ।

କର୍ମଚାରୀ ଜଣକ କହିଲେ, "କମ୍ ଦାମରେ ବିକୁଥିବା ଏ ଲୋକଟି ବୋକା ।"

"ନା, ଆଜ୍ଞା, ଇଏ ବୁଦ୍ଧିମାନ ।" କହିଲା ସୁଦର୍ଶନ । କର୍ମଚାରୀ ତା' ମନ୍ତବ୍ୟ ଉପରେ ବିଶେଷ ଗୁରୁତ୍ୱ ଦେଲେ ନାହିଁ । ଦୁହେଁ ବଜାରରେ ବୁଲିବୁଲି କରି ପ୍ରାୟ ଅଧ ଘଣ୍ଟାକ ପରେ ସେ ବାଇଗଣ ଦୋକାନ ଦୁଇଟି ପାଖକୁ ଆସି ଦେଖିବା ବେଳକୁ କମ୍ ଦାମରେ ବିକୁଥିବା ଲୋକଟି ସବୁ ବିକିଦେଇ ଚାଲିଗଲାଣି । ଅଧିକ ଦାମରେ ବିକୁଥିବା ଲୋକଟିର ବିଶେଷ ବିକ୍ରି ହୋଇନାହିଁ । ଜଣେ ଗରାଖ ତାକୁ କହୁଛି, "ଆଉ ଟିକିଏ ଆଗରୁ ଆମ ପଡ଼ୋଶୀ ଏଇଠାରୁ ଯେତେ ଦାମରେ ନେଇଗଲେ, ତମକୁ ମୁଁ ତାହାଠୁଁ ବେଶି ଦାମ ଦେବି କାହିଁକି ?"

"ଆଚ୍ଛା, ତମେ ସେତେବେଳେ ଯେ ମୋତେ କହିଲ କି କମ୍ ଦାମରେ ବାଇଗଣ ବିକୁଥିବା ଲୋକଟି ବୁଦ୍ଧିମାନ୍, ସେକଥା କାହିଁକି କହିଲ ?" କର୍ମଚାରୀ ଜଣକ ପଚାରିଲେ ।

"ମହାଶୟ ! ବାଇଗଣ ଗୋଟିଏ ଏପରି ଚିଜ, ଯେଉଁଥିରେ ସାମାନ୍ୟ ଗୁଣଗତ ପାର୍ଥକ୍ୟ ଲୋକଙ୍କ ଆଖିରେ ଧରା ପଡ଼ିବ ନାହିଁ । ତେଣୁ ସମସ୍ତେ କମ୍ ଦାମରେ ବିକୁଥିବା ଦୋକାନୀ ପାଖକୁ ଆସିବେ । ତା' ଜିନିଷ ଅଳ୍ପ ସମୟ ଭିତରେ ଶେଷ ହୋଇଯିବ । ଯଦି ସେ ଲୋକ ତା' ବାଇଗଣ ସତେଜ ବାଇଗଣ ଭଳି ଏକା ଦାମ୍‌ରେ ବିକନ୍ତା, ତେବେ ତା' ପାଖକୁ କେହି ଆସନ୍ତେ ନାହିଁ । ତେଣୁ ସେ ସାମାନ୍ୟ ଦାମ୍ ଊଣା କରି ଅଧିକ ଲାଭ କରିଛି ଓ ସମୟ ବଞ୍ଚାଇଛି ।" ସୁଦର୍ଶନ ଉତ୍ତର ଦେଲା ।

ହଠାତ୍ କର୍ମଚାରୀଜଣକ ସୁଦର୍ଶନକୁ କହିଲେ, "ତମର ବିଚାର ବୁଦ୍ଧି ତ ଖୁବ୍

ପ୍ରଖର ଦେଖୁଛୁ । ଗୋଟାଏ କାମ କର । ମୋର ଜଣେ ସହକାରୀ ଦରକାର । ଆଜି ରାତିରେ ପ୍ରାସାଦ ପ୍ରାଙ୍ଗଣରେ ଦୁଇ ନର୍ତ୍ତକୀଙ୍କ କାର୍ଯ୍ୟକ୍ରମ ଅଛି । ମୁଁ ରାଜାଙ୍କ ପାଖରେ ଥିବି । କାର୍ଯ୍ୟକ୍ରମ ପରେ ତମେ ଆସି ମୋତେ ସେଇଠାରେ ଭେଟିବ । ରାଜାଙ୍କୁ ଥରେ ତମକୁ ଦେଖାଇ ଦେଇ ଚାକରୀଟି ଦେଇଦେବି ।"

"ଆପଣଙ୍କୁ ବହୁତ ଧନ୍ୟବାଦ ।" ସୁଦର୍ଶନ କର୍ମଚାରୀଙ୍କଠୁ ବିଦାୟ ନେଲା ।

ସେ ରାତିରେ ନୃତ୍ୟ କାର୍ଯ୍ୟକ୍ରମ ପରେ ପରେ ସୁଦର୍ଶନ ରାଜାଙ୍କ ପାଖକୁ ଗଲା । ହଠାତ୍ ରାଜା ପଚାରିଦେଲେ, "ହଇହେ ଯୁବକ, ତମେ ତ ଜଣେ ସାଧାରଣ ଦର୍ଶକ ଭାବରେ ନାଚ ଉପଭୋଗ କରୁଥିଲ । କହିଲ, ଦୁଇଜଣଙ୍କ ଭିତରୁ କାହାକୁ ପୁରସ୍କାର ଦିଆଯିବ ?"

ସୁଦର୍ଶନ ନମ୍ର ଭାବରେ କହିଲା, "ମହାରାଜ ! ଆପଣ ମୋତେ ଏକଥା ପଚାରିବାର ଅର୍ଥ ଆପଣ ଓ ଆପଣଙ୍କ ମନ୍ତ୍ରୀମାନେ ଉଭୟ ନର୍ତ୍ତକୀଙ୍କ ନୃତ୍ୟରେ ସମାନ ଭାବରେ ମୁଗ୍ଧ ହୋଇଛନ୍ତି । କହନ୍ତୁ, ଆପଣଙ୍କ ଉଦ୍ଦେଶ୍ୟ ନୃତ୍ୟକଳାକୁ ସମ୍ମାନ ଦେବା ନା କୌଣସି ନର୍ତ୍ତକୀକୁ ସମ୍ମାନ ଦେବା ?"

"ନୃତ୍ୟକଳାକୁ ସମ୍ମାନ ଦେବା ।" ରାଜା କହିଲେ !

"ତେବେ, ମଣିମା, ଆପଣ ଉଭୟଙ୍କୁ ପୁରସ୍କାର ଦିଅନ୍ତୁ । ଉଭୟେ ନିଜ ନିଜ






ପ୍ରତିଭା ଅନୁସାରେ ଯଥା ସମ୍ଭବ ସୁନ୍ଦର ନାଚିଛନ୍ତି। ଏ କ୍ଷେତ୍ରରେ ଜଣକୁ ପୁରସ୍କାର ଦେବାର ଅର୍ଥ ଅନ୍ୟକୁ ଦାରୁଣ ଆଘାତ ଦେବା।" ସୁଦର୍ଶନ ମନ୍ତବ୍ୟ ଦେଲା।

"କିପରି?" ରାଜା ପଚାରିଲେ।

"ମହାରାଜ, ଅନେକ ନର୍ତ୍ତକୀଙ୍କ ଭିତରେ ଯଦି ପ୍ରତିଯୋଗିତା ହୋଇଥାନ୍ତା, ତେବେ ଭିନ୍ନ କଥା। ଆପଣ ଜଣକୁ ପୁରସ୍କାର ଦେଲେ ଅନ୍ୟ ଜଣେ କେହି ଦୁଃଖ ପାଆନ୍ତା ନାହିଁ। ଏ କ୍ଷେତ୍ରରେ ନର୍ତ୍ତକୀ ମାତ୍ର ଦୁଇଜଣ। ପୁଣି ଉଭୟେ ନିଜ ନିଜ ସାଧ୍ୟାନୁସାରେ ଭଲ ନୃତ୍ୟ କରିଛନ୍ତି। ଜଣକୁ ପୁରସ୍କାର ଦେଲେ ଅନ୍ୟ ଜଣେ ବହୁତ ଦୁଃଖ ପାଇବ। ଫଳରେ ତା'ର ନୃତ୍ୟ ପ୍ରତି ଆଗ୍ରହ କମିଯିବ।" ସୁଦର୍ଶନ କହିଲା।

ରାଜାଙ୍କୁ ସୁଦର୍ଶନର ମନ୍ତବ୍ୟ ବହୁତ ଭଲ ଲାଗିଲା। ସେ ତା' ପରିଚୟ ପଚାରି ବୁଝିଲେ ଓ ସଙ୍ଗେ ସଙ୍ଗେ ତାକୁ ନିଜର ଅନ୍ୟତମ ପରାମର୍ଶଦାତା ରୂପେ ନିଯୁକ୍ତ ଦେଲେ। ରାଜାର ପରିଦର୍ଶକର ସହକାରୀ ହେବା ପରିବର୍ତ୍ତେ ସେ ହେଲା ମନ୍ତ୍ରୀପଦବାଚ୍ୟ ଅମାତ୍ୟ।

ଅଳ୍ପଦିନ ଭିତରେ ମଣିଷ ଚରିତ୍ର ବୁଝିବାରେ ତା'ର ଦକ୍ଷତା ଯୋଗୁଁ ରାଜା ତାହା ଉପରେ ବହୁତ ସନ୍ତୁଷ୍ଟ ହେଲେ। ସେ ଦରବାରରେ ବସିଥାଏ। ଅନ୍ୟ ରାଜ୍ୟର ଆଗନ୍ତୁକ ଅଥବା ନିଜ ରାଜ୍ୟର ବିଚାରପ୍ରାର୍ଥୀମାନଙ୍କ କଥାବାର୍ତ୍ତା, ଢଙ୍ଗଢାଙ୍ଗ ସେ ଲକ୍ଷ୍ୟ କରି ଦେଖେ। ସେମାନଙ୍କ ସମ୍ପର୍କରେ ତା'ର ଯାହା ଧାରଣା, ସେ ତାହା ଦରକାର ବେଳେ ରାଜାଙ୍କୁ କହେ।

ଦିନେ ସେ ଘରକୁ ଆସିବା ବେଳକୁ ଦେଖିବାକୁ ତା' ଦୁଇ ଭଉଣୀ ଓ ଭଣୋଇ ସେଠି ଅଛନ୍ତି। ବଡ଼ ଭଉଣୀ ପଚାରିଦେଲେ, "ସୁଦର୍ଶନ! ତୁ ପରା ମଣିଷ ଚରିତ୍ର ବୁଝିବାରେ ଓସ୍ତାଦ୍! ଆମମାନଙ୍କ ବିଷୟରେ ତ କାହିଁ କେବେ କିଛି କହିଲୁ ନାହିଁ? ବଡ଼ ଭାଇ କିପରି ଲୋକ?"

"ଭାଇ ବିଜ୍ଞ ଓ ବିଚକ୍ଷଣ। ବିଚାରକଙ୍କ ପରାମର୍ଶଦାତା ହେବା କ୍ଷୁର ଧାରରେ ଚାଲିବା

ଭଲ । ଲୋକେ ସବୁ ବଗୃଚନରେ ଖୁସି ହେବେ, ତେବେ ବଗୃଚକଙ୍କୁ ଧନ୍ୟବାଦ ଦେବେ । ଖୁସି ନହେଲେ ପରାମର୍ଶଦାତାକୁ ଦୋଷ ଦେବେ ।" ସୁଦର୍ଶନ କହିଲା ।

"ଆଚ୍ଛା, ମୋ କଥା କ'ଣ ?" ବଡ଼ ଭଉଣୀ ପଚାରିଲେ ।

"ତମେ ବିବେକୀ ଓ ବୁଦ୍ଧିମତୀ ।"

"ମୋ ସାନ ଭଉଣୀ ?"

"ତା'ର ସଙ୍ଗୀତ ପ୍ରତିଭା ଅପୂର୍ବ । ସେ ବୃକୋଦର ଶର୍ମାଙ୍କଠାରୁ ଗୀତ ଶିଖି ଯେ ଗାୟିକା ହୋଇ ପାରିଛନ୍ତି, ଏହା କମ୍ କଥା ନୁହେଁ ।"

ସମସ୍ତେ ହସିଲେ । କାରଣ ବୃକୋଦର ଶର୍ମା ତାଙ୍କ ଛାତ୍ର ଛାତ୍ରୀମାନଙ୍କୁ ଏପରି ଧମକ ଦିଅନ୍ତି ଯେ ସେଥିରେ ଯିଏ ଯେତିକି ଶିଖିଥାଏ, ସେତିକି ଭୁଲିଯାଏ !

"ଆଚ୍ଛା, ଏଥର ମା'ଙ୍କ କଥା କହ !"

"ମା ଆମର ମହୀୟସୀ । ସେ ଆମ ପାଇଁ କ'ଣ ନ କରିଛନ୍ତି ? ତାଙ୍କର ଧୈର୍ଯ୍ୟ, କଷ୍ଟ-ସହିଷ୍ଣୁତା ଓ ଗଭୀର ସ୍ନେହ ଯୋଗୁଁ ଆମେ ସମସ୍ତେ ମଣିଷ ହୋଇଛୁଁ ।"

"ଆଉ ବାପା କିପରି ଲୋକ ?" ଭଉଣୀ ପୁଣି ପଚାରିଲା ।

"ମୋତେ ଆଉ କିଛି ପଚାର ନାହିଁ । ମୁଁ ଆଉ କହିବି ନାହିଁ ।" ସୁଦର୍ଶନ ରୋକ୍‌ଠୋକ୍ ଶୁଣାଇ ଦେଲା ।

ଶିବଶଙ୍କର ସେତେବେଳେ ଘର ଭିତରକୁ ପଶି ଆସୁଥିଲେ । ଏତିକି ଶୁଣି ଦେଇ



ବାହାରିଗଲେ । ଏହା ଲକ୍ଷ୍ୟ କଲେ ତାଙ୍କ ସ୍ତ୍ରୀ ରମା । ସେ ବାହାର ଯାଇ ଦେଖିଲେ ଶିବଶଙ୍କରଙ୍କ ଆଖି ଛଳ ଛଳ ହୋଇ ଯାଇଛି । "ମୁଁ ବାସ୍ତବିକ ଅଯୋଗ୍ୟ । ମୁଁ ସେମାନଙ୍କ ପାଇଁ କିଛି କରିପାରି ନାହିଁ । ଆଜି ସିନା ସେମାନେ ନିଜେ ନିଜେ ଯଥେଷ୍ଟ ଉପାର୍ଜନ କରୁଛନ୍ତି । କିନ୍ତୁ ସେମାନେ ପିଲାଥିଲାବେଳେ ମୁଁ ଦିନେ ହାତଖୋଲି ସେମାନେ ଖର୍ଚ୍ଚ କରିପାରିବା ଭଳି ପଇସା ସେମାନଙ୍କୁ ଦେଇପାରି ନାହିଁ ।"

"କିନ୍ତୁ ତମେ ଏପରି ଭାବରେ ଘର ଭିତରକୁ ଯାଉଁ ଯାଉଁ ବାହାରି ଆସିଲ, ଏହା ଜୁଆଇଁମାନେ ଦେଖିଥିଲେ କ'ଣ ଭାବିବେ ?" ଏହା କହି ରମା ତାଙ୍କୁ ଭିତରକୁ ନେଇଗଲେ । ଗଲାବେଳକୁ ଦ୍ୱାର ପାଖରେ ସେମାନେ ସୁଦର୍ଶନର କଣ୍ଠସ୍ୱର ଶୁଣିଲେ । ସେ କହୁଥିଲା, "ବାପା ଆସୁଥିଲେ ବୋଲି ମୁଁ ତାଙ୍କ ବିଷୟରେ କହିଲି ନାହିଁ । ବାପା ଆକାଶ ଭଳି ଉଦାର । ଆମେ ସମସ୍ତେ ତାଙ୍କଠାରୁ ଯାହା ଅଚେତନ ଭାବରେ ଶିଖିଛୁଁ, ତାହାହିଁ ଆମର ସବୁଠାରୁ ବଡ଼ ସମ୍ପଦ । ତାହା ହେଲା ବିନମ୍ର ଗୁଣ । ବାପା ନିଜ କବି ପ୍ରତିଭାକୁ ନେଇ ଦିନେ ବି ଗର୍ବ କରି ନାହାନ୍ତି । ତାଙ୍କର ପ୍ରତିଭା ବ୍ୟାପକ । କିନ୍ତୁ ତାହା କେତେଜଣ ବୁଝନ୍ତି ? ସେପାଇଁ ତାଙ୍କର ତିଳେ ବି କ୍ଷୋଭ ନାହିଁ । ସେ ଭଗବାନଙ୍କ ପାଖରେ ସମର୍ପିତ । ଆମ ପାଇଁ ସେ ସବୁଠାରୁ ବଡ଼ ପ୍ରେରଣା ଓ ଦୃଷ୍ଟାନ୍ତ । ସେ ମଣିଷ ନୁହନ୍ତି, ଦେବତା ।"

ଶିବଶଙ୍କର ସେତେବେଳକୁ ଭିତରକୁ ପଶି ଆସିଥିଲେ । କିନ୍ତୁ ସେ ପୁଣି ବାହାରିଗଲେ । ଏଥର ବି ତାଙ୍କ ଆଖି ଛଳ ଛଳ ଦିଶୁଥିଲା । "ମୋ ଭାଗ୍ୟ, ମୁଁ ଏଭଳି ପୁଅ ପାଇଛି !" ସେ ରମାଙ୍କୁ ଚୁପି ଚୁପି କହିଲେ ।

ରମା ହସିଲେ । ତାଙ୍କ ଆଖି ମଧ୍ୟ ଛଳ ଛଳ ଦିଶୁଥିଲା । "ଅନେକେ ଭାବୁଥିଲେ ଆମ ସୁଦର୍ଶନ ବିଶେଷ ଯୋଗ୍ୟ ନୁହେଁ । କିନ୍ତୁ ଆଜି ତା'ର ପ୍ରତିଷ୍ଠା ଦେଖ ।" ସେ କହିଲେ ।






# ଅମୂଲ୍ୟ ହୀରା!

ଧନଗିର ରାଜ୍ୟର ରାଜକନ୍ୟାଙ୍କ ବିବାହ ସ୍ଥିର ହୋଇଗଲା । ବିବାହ ଦିନ ସେ ପିନ୍ଧିବା ନିମନ୍ତେ ରାଜା ଗୋଟିଏ ଅତ୍ୟନ୍ତ ମୂଲ୍ୟବାନ ହାର ଗଢ଼ାଇଲେ । ହାରଟି ଖୁବ୍ ସୁନ୍ଦର ହୋଇଥାଏ । ଖାଲି ସେଥିରେ ହୀରାର ଲକେଟ୍ ଖଣ୍ଡିଏ ଖଞ୍ଜିବାର ସ୍ଥିର ହେଲା ।

"ଝିଅ! ତୁ ନିଜେ ହୀରା ଖଣ୍ଡିକ ପସନ୍ଦ କର ।" ଏହା କହି ରାଜା ଧନଗିର ରାଜ୍ୟର ରାଜଧାନୀରେ ଥିବା ସବୁ ହୀରା ବେପାରୀଙ୍କର ଭଲ ଭଲ ହୀରା ଆଣି ତାଙ୍କୁ ଦେଖାଇଲେ । କିନ୍ତୁ ରାଜକନ୍ୟାଙ୍କ ମନ ମାନିଲା ନାହିଁ ।

ଏ ସମ୍ବାଦ ଯାଇ ଧନଗିରର ପଡ଼ୋଶୀ ସହର ସୁବର୍ଣ୍ଣପୁରରେ ପହଞ୍ଚିଲା । ସେଠାରେ ତିନିଜଣ ହୀରା ବେପାରୀ ଥିଲେ । ସେମାନଙ୍କ ନାମ ଜୟଗୁପ୍ତ, ଜୀବନ ଦାସ ଓ ମୟୂର ଜୀ । ସେ ତିନିହେଁ ଆସି ପହଞ୍ଚିଗଲେ ।

ପ୍ରଥମେ ଜୟଗୁପ୍ତଙ୍କ ଡାକ ପଡ଼ିଲା । ସେ ଯାଇ ରାଜକନ୍ୟାଙ୍କ ଆଗରେ ତାଙ୍କ ହୀରାତକ ଓଜାଡ଼ି ଦେଲେ । "ରାଜକୁମାରୀ! ଏ ସବୁଗୁଡ଼ିକ ଅତ୍ୟନ୍ତ ମୂଲ୍ୟବାନ ହୀରା ।" ସେ କହିଲେ ।

ରାଜକନ୍ୟା ହୀରାଗୁଡ଼ିକ ଆଡ଼େ ଅନେକ ସମୟ ଅନାଇ ରହିଲେ ଓ ତା'ପରେ କହିଲେ, "ଆଚ୍ଛା, ମୁଁ ଅନ୍ୟମାନଙ୍କ ହୀରା ଦେଖେଁ!"

ତା'ପରେ ଜୀବନଦାସଙ୍କୁ ଭିତରକୁ ଆସିବାକୁ କୁହାଗଲା । ସେ ବି ଆସି ହୀରାତକ ଓଜାଡ଼ି ଦେଲେ । ରାଜକନ୍ୟା ମନକୁ ମନ କହିଲେ, "ବାଃ, କିନ୍ତୁ କେଉଁ ଗୋଟିକ ମୋ ହାରକୁ ମାନିବ, କେଜାଣି!"

"ଆଜ୍ଞା, ଏଇଟା ଭଲ ହେବ ।" ଏହା କହି ଜୀବନଦାସ ଗୋଟିଏ ହୀରା ନିର୍ଦ୍ଦେଶ କଲା ।

ପୂର୍ଣ୍ଣଚନ୍ଦ୍ର

ରାଜକନ୍ୟା ବିରକ୍ତ ହୋଇ କହିଲେ, "କେଉଁଟି ଭଲ ମାନିବ, ସେକଥା ସିନା ମୁଁ ବୁଝିବି!" ତା'ପରେ ସେ ଜୀବନଦାସଙ୍କୁ ବିଦା କରିଦେଲେ ।

ପରେ ପରେ ଆସିଲେ ମୟୂର ଜୀ । ସେ ପଶି ଆସିଲେ କଥା କହି କହି, "ରାଜକୁମାରୀ, ମୋଠିଁ ଖଣ୍ଡିଏ ଅପୂର୍ବ ହୀରା ଅଛି । କିନ୍ତୁ ମୁଁ କିଏ ତାକୁ ଅପୂର୍ବ କହିବାକୁ ? ଆପଣ ବାଛି ନିଅନ୍ତୁ ।" ଏହା କହି ସେ ତାଙ୍କ ପେଟି ଖୋଲି ଧରିଲେ । ରାଜକନ୍ୟା ମୁହୂର୍ତ୍ତେ ଅନାଇ ତା'ପରେ ଖଣ୍ଡିଏ ହୀରା ଉଠାଇ ନେଲେ ।

"ବାଃ, ଆପଣଙ୍କର କି ପ୍ରଖର ଆଖି! ସେହି ଖଣ୍ଡିକ ଅପୂର୍ବ ହୀରା ।" ମୟୂର ଜୀ କହିଲେ ।

ରାଜକନ୍ୟା ସେହି ଖଣ୍ଡିକ କିଣିଲେ ।

ରାଜା ଯେତେବେଳେ ଜାଣିଲେ ଯେ ଝିଅ ତା' ମନମୁତାବକ ହୀରା ପାଇଛି, ସେ ସେତେବେଳେ ଖୁସି ହୋଇ ମୟୂର ଜୀଙ୍କୁ ଧନ୍ୟବାଦ ଦେଲେ ଓ ତାଙ୍କୁ ଆଉ ଥରେ କିଛି ଭଲ ହୀରା ଧରି ଆସିବାକୁ ନିର୍ଦ୍ଦେଶ ଦେଲେ । ମୟୂର ଜୀ ରାଜାଙ୍କୁ ଅନେକ ପ୍ରକାରେ କୃତଜ୍ଞତା ଜଣାଇ ବାହାରି ଗଲେ ।

ମୟୂର ଜୀ ପ୍ରାସାଦ ବାହାରକୁ ଆସିବା ମାତ୍ରେ ଜୟଗୁପ୍ତ ଓ ଜୀବନଦାସ ତାଙ୍କ ପେଟିରେ ଥିବା ହୀରାତକ ଦେଖି ଆଶ୍ଚର୍ଯ୍ୟ ହୋଇ କହିଲେ, "ଆରେ ଭାଇ, ଆମଠିଁ ତମର ଏସବୁ ହୀରାଠୁଁ ବହୁତ ଅଧିକ ମୂଲ୍ୟବାନ ହୀରା ଥାଉଁ ଥାଉଁ ରାଜକୁମାରୀ ତମଠୁଁ କିଣିବାର ରହସ୍ୟ କ'ଣ ?"

"ରହସ୍ୟ ହେଲା, ମୋର ସବୁ ହୀରା ସାଧାରଣ । ଖଣ୍ଡିଏ ମାତ୍ର ହୀରା ଥିଲା ଅସାଧାରଣ । ରାଜକୁମାରୀଙ୍କୁ ସେ ଖଣ୍ଡିକ ବିଶେଷ ଆକୃଷ୍ଟ କରିବା ସ୍ୱାଭାବିକ! ତମମାନଙ୍କର ସବୁ ହୀରା ଅତି ମୂଲ୍ୟବାନ । ସେ କେଉଁଟି ବାଛିବେ ସ୍ଥିର କରି ପାରିଲେ ନାହିଁ ।" ହସି ହସି ଉତ୍ତର ଦେଲେ ମୟୂର ଜୀ ।






[ ୧୩ ]

[ଚନ୍ଦ୍ରସେନ ରାଜା ହେବା ପରେ ରାଜ୍ୟରେ ଅଶାନ୍ତି ସୃଷ୍ଟି କରୁଥିବା ଡାକୁମାନଙ୍କୁ କୌଶଳ-କ୍ରମେ ସାଧାରଣ ନାଗରିକ ବନାଇ ରଖିଲେ । ରାଣୀ କାନ୍ତିମତି ଗୋଟିଏ ପୁତ୍ର ସନ୍ତାନ ଜନ୍ମ ଦେଲେ । ଯେଉଁଦିନ ତାକୁ ପାଞ୍ଚବର୍ଷ ପୂରିଲା, ସେହିଦିନ ସର୍ତ୍ତ ଅନୁସାରେ ରାକ୍ଷସ ଉଗ୍ରାକ୍ଷ ଆସି ତାକୁ ନେଇ ଯିବାପାଇଁ ପହଞ୍ଚିଗଲା । ତାକୁ ଗୋଟାଏ ଶିଶୁ ହସ୍ତାନ୍ତର କରାଗଲା, କିନ୍ତୁ ସେ ଶିଶୁ ଯେ ରାଜପୁତ୍ର ନୁହେଁ, ଏହା ସେ ଅଚିରେ ବୁଝିପାରି ଫେରି ଆସିଲା । ତା'ପରେ...]

ଉଗ୍ରାକ୍ଷ ରାଜପୁତ୍ର ବୋଲି କୁହାଯାଇ ତାକୁ ଦିଆଯାଇଥିବା ଶିଶୁଟିକୁ ଧରି କପିଳପୁର ଦୁର୍ଗ ଆଡ଼େ କ୍ଷିପ୍ର ଗତିରେ ଫେରିବାକୁ ଲାଗିଲା । ସେ କ୍ରୋଧରେ ଅନ୍ଧପ୍ରାୟ ହୋଇଥାଏ, କିନ୍ତୁ ରାଜା ଚନ୍ଦ୍ରସେନଙ୍କୁ ସେ ଯେତେହେଲେ ରାଜା ଓ ମିତ୍ର ବୋଲି ମାନୁଥାଏ । ତେଣୁ ସେ ନିଜ କ୍ରୋଧ ଗୁପ୍ତ ରଖିଥାଏ । ଅନ୍ତତଃ କୌଣସି ଭଙ୍ଗାରୁଜା କାମ ଆରମ୍ଭ କରି ନଥାଏ ।

ଉଗ୍ରାକ୍ଷ ଦୁର୍ଗ ଭିତରକୁ ପଶି ଆସୁଥିବାର ଦେଖି ସେନାପତି ଅମରପାଳ ଦୌଡ଼ି ଦୌଡ଼ି ଯାଇ ରାଜା ଚନ୍ଦ୍ରସେନଙ୍କୁ କହିଲେ, "ମହାରାଜ,




ଉଗ୍ରାକ୍ଷ ଚପା କଣ୍ଠରେ ହୁଙ୍କାର ଛାଡ଼ି ମାଡ଼ି ଆସୁଛି । କାନ୍ଧରେ ବସିଛି ସେ ପିଲା ।"

ଚନ୍ଦ୍ରସେନ ଗମ୍ଭୀର ହୋଇ କିଛି ସମୟ ଚୁପ୍ ରହି କହିଲେ, "ଏହାର ଅର୍ଥ, ସେ ପିଲା ଯେ ରାଜକୁମାର ନୁହେଁ, ଏକଥା ସେ ଧରିପକାଇଛି !"

"ମହାରାଜ, ଆମ୍ଭେ ଉଗ୍ରାକ୍ଷକୁ ଏ ଦିଗରେ ଠକି ପାରିବା ନାହିଁ । ସେ ଦିଗରେ ଚେଷ୍ଟା କରିବା ମଧ୍ୟ ଉଚିତ ନୁହେଁ । ଏକ ଦିଗରେ ସେ ରାକ୍ଷସ, ଅନ୍ୟ ଦିଗରେ ସେ ମହାବଳଶାଳୀ । ଅତି ସାବଧାନରେ ଆମକୁ ତା' ସହ କାରବାର କରିବାକୁ ହେବ । ତେଣେ କରବୀର ଓ ନାଗବର୍ମାଙ୍କୁ ବିପଦର ଆଶଙ୍କା ମଧ୍ୟ ଦୂର ହୋଇ ନାହିଁ !" ଅମରପାଳ କହିଲା ।

"ତୁମେ ଠିକ୍ କହୁଛ, ଅମରପାଳ !" ଏହା କହି ଚନ୍ଦ୍ରସେନ କାନ୍ତିମତଙ୍କ ଆଡ଼େ ଅନାଇ କହିଲେ, "ବର୍ତ୍ତମାନ ଚିନ୍ତା କରି ଲାଭ ନାହିଁ । ଯେତେବେଳେ ମୁଁ ତାକୁ କଥା ଦେଇଥିଲି, ସେତେବେଳେ ମୋ ନିଜ ବୟସ ଥିଲା କମ । ଏବେ ମୁଁ ନିଜେ ଦେଇଥିବା କଥା ମୋ ଉପରେ ଏଭଳି ଦୁଃଖଦାୟକ ବୋଝ ହେବ, ଏହା ସେତେବେଳେ କଳ୍ପନା କରିପାରି ନଥିଲି ।"

କଣ୍ଠସ୍ୱର ନିମ୍ନ କରି ଅମରପାଳ ପ୍ରଶ୍ନ କଲା, "ମହାରାଜ, ଗୋଟିଏ କଥା କହିବି ? ଉଗ୍ରାକ୍ଷକୁ ମାରି ପକାଇଲେ ତ କଥା ଛିଡ଼ିଯା'ନ୍ତା !"

ତମେ ସେକଥା ଯେତେ ସହଜ ବୋଲି ଭାବୁଛ, ସେତେ ସହଜ ନୁହେଁ । ତା' ଛଡ଼ା ସେ ମୋର ସହାୟତା କରିଛି ଓ ମୁଁ ତା' ହାତରେ ମୋ ପୁଅକୁ ସମର୍ପି ଦେବି ବୋଲି ପ୍ରତିଶ୍ରୁତି ଦେଇଛି । ବର୍ତ୍ତମାନ ଲୋକେ ମୋତେ କହିବେ କ'ଣ ?"

ହଠାତ୍ କାନ୍ତିମତ ଆସନ ଛାଡ଼ି ଉଠି ଠିଆ ହେଲେ ଓ କହିଲେ, "ମହାରାଜ, ଉଗ୍ରାକ୍ଷ ଓ ରାଜକୁମାର ବ୍ୟାପାର ମୋ ଉପରେ ଛାଡ଼ି ଦିଅନ୍ତୁ ।" ଏହା କହି ସେ ନିଜ କକ୍ଷରେ ପ୍ରବେଶ୍ କଲେ ।

ପ୍ରାସାଦ ତଳେ ପହଞ୍ଚି ଯାଇ ଉଗ୍ରାକ୍ଷ ବଜ୍ରନାଦରେ ଡାକିଲା, "ମହାରାଜ! ମହାରାଜ!"

ଚନ୍ଦ୍ରସେନ ସଙ୍ଗେ ସଙ୍ଗେ ତଳକୁ ଓହ୍ଲାଇଗଲେ। "ଉଗ୍ରାକ୍ଷ, କଥା କ'ଣ? ବର୍ତ୍ତମାନ ଆମେ ତୁମର କଥା ଆଲୋଚନା କରୁଥିଲୁଁ। ତୁମେ ବହୁତ ଦିନ ବଞ୍ଚିବ!" ଚନ୍ଦ୍ରସେନ କହିଲେ।

"ମହାରାଜ! ମୋତେ ଦଗା ଦେଲେ? ମୋ ସହିତ ବିଶ୍ୱାସଘାତକତା କଲେ? ମୋ ପ୍ରତି ଆପଣ ଏପରି ବ୍ୟବହାର କରିବେ, ଏକଥା ମୁଁ କଳ୍ପନା କରି ନଥିଲି। ଆପଣ କ୍ଷତ୍ରୀୟ ପରା? ମୁଁ ଆପଣଙ୍କର ମିତ୍ରଟି? ଆପଣଙ୍କ ସହିତ କାନ୍ଧକୁ କାନ୍ଧ ଲଗାଇ ମୁଁ ଲଢ଼ିଛିଟି? ଆପଣ କ'ଣ ସବୁ ଭୁଲିଗଲେ?" ନିଜ କାନ୍ଧରୁ ପିଲାଟିକୁ ଓତାରି ଦେଇ ଉଗ୍ରାକ୍ଷ କହିଲା।

"ରାକ୍ଷସରାଜ! ଆମ ଦାସୀମାନଙ୍କ ଭୁଲ୍‌ରୁ ଏପରି ହେଲା। ତରବରରେ ରାଜପୁତ୍ର ବଦଳରେ ସେମାନେ ମନ୍ତ୍ରୀ-ପୁତ୍ରକୁ ତୁମ ହାତକୁ ଟେକିଦେଲେ।" ଅମରପାଳ କହିଲା।

ଉଗ୍ରାକ୍ଷ ଅଟ୍ଟହାସ୍ୟ କରି ପିଲାଟିକୁ ଟେକି ଧରିଲା ଓ କହିଲା, "ଇଏ ମନ୍ତ୍ରୀ-ପୁତ୍ର! ରାଜାଙ୍କ ପୁଅଠାରୁ କ'ଣ ତାଙ୍କ ମନ୍ତ୍ରୀ ହେଲଣି? ଦେଖ ଅମରପାଳ, ଇଏ ମନ୍ତ୍ରୀ-ପୁତ୍ର ହେଲେ




ବି ମୋ ଆବଶ୍ୟକତା ସେଥିରେ ମେଣ୍ଟିବ ନାହିଁ। ମୋର ରାଜପୁତ୍ର ଲୋଡ଼ା! ରାଜା ଚନ୍ଦ୍ରସେନ! ଆପଣ ନିଜ ସର୍ତ୍ତ ରକ୍ଷା କରନ୍ତୁ। ରାଜପୁତ୍ର ବଦଳରେ ଯଦି ମୋତେ ସାରା ରାଜ୍ୟ ଦେବେ, ତଥାପି ମୁଁ ମାନିବ ନାହିଁ।"

ଚନ୍ଦ୍ରସେନ ଧୀର କଣ୍ଠରେ କହିଲେ, "ଉଗ୍ରାକ୍ଷ, ଉତ୍ତେଜିତ ହୁଅ ନାହିଁ। ଦାସୀମାନଙ୍କର ଭୁଲ୍ ହୋଇଯାଇଛି। ବର୍ତ୍ତମାନ ସେମାନେ ଅସଲ ରାଜପୁତ୍ରକୁ ବେଶ କରି ଆଣୁଛନ୍ତି।"

ଉଗ୍ରାକ୍ଷ ଅପେକ୍ଷା କଲା। କିଛି ସମୟ ପରେ ଦାସୀମାନେ ଗୋଟିଏ ପିଲାକୁ ଆଣି ତା' ଆଗରେ ଠିଆ କରାଇ ଦେଲେ। ଉଗ୍ରାକ୍ଷ



ଦାସୀମାନେ ହସିଲେ । ସେମାନେ କହିଲେ, "ରାକ୍ଷସରାଜ, ତମେ ଯେତେହେଲେ ରାକ୍ଷସ ! ମଣିଷ ସମାଜର କଥାବାର୍ତ୍ତାର ଢଙ୍ଗ ତମକୁ ଆଉ କେତେଦୂର ଜଣାଥା'ନ୍ତା ? ତମେ ସିନା ସେ ପିଲାକୁ ସିଏ କାହାର ପୁଅ ସେକଥା ପଚାରିଥାନ୍ତ ?"

ଉଗ୍ରାକ୍ଷ ଦାସୀମାନଙ୍କ ଆଡ଼କୁ କୌତୁକପୂର୍ଣ୍ଣ ଦୃଷ୍ଟିରେ ଅନାଇ କହିଲା, "ତମେମାନେ ନିଜ ନିଜକୁ ଖୁବ ବୁଦ୍ଧିମାନ ଠଉରାଉଛ, ନୁହେଁ ? ପିଲା ମୋ ପ୍ରଶ୍ନର ଉତ୍ତର କ'ଣ ଦେବ, ସେକଥା କ'ଣ ତମେମାନେ ତାକୁ ଶିଖାଇ ଦେଇ ନଥିବ ? ଠିକ୍ ଅଛି । ଇଏ ରାଜପୁତ୍ର କି ନୁହେଁ, ମୁଁ ବଣ ଭିତରେ ପହଞ୍ଚି ଭିନ୍ନ ପ୍ରକାର ପରୀକ୍ଷା ଦ୍ୱାରା ସେକଥା ଧରିନେବି । ଯଦି ତମେମାନେ ପୁଣି ମୋତେ ଦଗା ଦେଇଛ ବୋଲି ଜାଣିବି, ତେବେ ତମମାନଙ୍କୁ ଧରି ନେଇଯିବି ଓ ମୋ ରାକ୍ଷସ ଅନୁଚରମାନଙ୍କ ସହ ବିଭା କରାଇଦେବି !"

ରାକ୍ଷସର ଏ ଧମକ ଶୁଣି କେହି କେହି ଦାସୀ ହସିଲେ ତ କେହି କେହି ଡରିଗଲେ । ଉଗ୍ରାକ୍ଷ ସେ ସୁକୁମାର ବାଳକଟିକୁ କାନ୍ଧରେ ବସାଇ ଲମ୍ବ ଲମ୍ବ ପାଦ ପକାଇ ଜଙ୍ଗଲ ଆଡ଼େ ଅଗ୍ରସର ହେଲା ।

ଜଙ୍ଗଲ ଭିତରେ କିଛି ଦୂର ଯିବା ପରେ ପୂର୍ବ ପିଲାଟି ଯେଉଁଠାରେ ତାକୁ ଶୃଙ୍ଖଳ ଡ଼ାଙ୍ଗ ଖଣ୍ଡିଏ ମାଗିଥିଲା, ସେ ସେଇଠାରେ ପହଞ୍ଚି

ତାକୁ ଭଲ ଭାବରେ ଲକ୍ଷ୍ୟ କରି ତା'ପରେ ଦାସୀମାନଙ୍କୁ କହିଲା, "ଏଥର ତମମାନଙ୍କର କିଛି ଭୁଲ୍ ହୋଇ ନାହିଁ ତ ? ଯଦି ମୋ ସହ ଖେଳ ଖେଳୁଥିବ, ତେବେ ତା'ର ପରିଣତି ଭଲ ହେବନାହିଁ, ଜାଣି ରଖ ।"

"ତମର ସନ୍ଦେହ ହେଉଥିଲେ ଏ ବାଳକକୁ ପଚାରୁନାହଁ କାହିଁକି ?" ଜଣେ ଦାସୀ କହିଲା ।

ସେତେବେଳେ ରାଜା ଚନ୍ଦ୍ରସେନ ସେଠାରେ ନଥିଲେ । ଉଗ୍ରାକ୍ଷ ବାଳକ ପାଖକୁ ଯାଇ ପଚାରିଲା, "ତୋ' ନାମ କ'ଣ ?"

"ମୋ ନାମ ଯୁବରାଜ !" ବାଳକ ଉତ୍ତର ଦେଲା ।




ଏ ପିଲାର ପରୀକ୍ଷା ନେବାକୁ ମନ କଲା । ସେ ତାକୁ ତାଙ୍ଗ ଖଣ୍ଡିକ ଦେଖାଇ ପଚାରିଲା, "ଆଚ୍ଛା, ତୋତେ ଯଦି ଏ ତାଙ୍ଗ ଖଣ୍ଡିକ ଦେବି, ତୁ ତାକୁ ନେଇ କରିବୁ କ'ଣ ?"

ପିଲା କହିଲା, "ମୁଁ କିଛି କରିବି ନାହିଁ । ବାପାକୁ ଦେଇଦେବି ।"

"ବାପା ତାକୁ ନେଇ କରିବ କ'ଣ ?" ରାକ୍ଷସ ପଚାରିଲା ।

"ଜାଣିନି କି ? ମୋଠାରୁ କୌଣସି ଗୋରୁ ବାହାରି ପଳାଇଲେ ତା' ଆଡ଼େ ଲକ୍ଷ୍ୟ କରି ଏହା ଫୋପାଡ଼ିବ ନହେଲେ ତାକୁ ଏଥିରେ ବାଡ଼େଇ ପୁଣି ଗୋଠ ଭିତରକୁ ନେଇ ଆସିବ !" ପିଲା ଉତ୍ତର ଦେଲା ।

ରାକ୍ଷସ ଉଗ୍ରାକ୍ଷ ସ୍ତବ୍ଧ ହୋଇ ପିଲାକୁ ଲକ୍ଷ୍ୟ କରି କହିଲା, "ବୁଝିଲି । ତୁ ତେବେ ରଙ୍କାର ଗୋଠ ଜଗୁଆଳର ପୁଅ ! ତୋ' ନାମ ଯୁବରାଜ ରଖି ମୋତେ ଧରାଇ ଦେଲେ ! ସେମାନେ କେଡ଼େ ଦଗାବାଜ ! ଏଥର ସେମାନଙ୍କୁ ପାନେ ଦେବି । ସେମାନେ କାହା ସହ ଖେଳ ଖେଳୁଛନ୍ତି ? ଭୁଲିଯାଇଛନ୍ତି ମୁଁ କିଏ !"

ସେ ପିଲାକୁ କାନ୍ଧରେ ବସାଇ ପୁଣି ପ୍ରାସାଦ ଆଡ଼େ ଫେରି ଚାଲିଲା । ଦୁର୍ଗ ସାମ୍ନାରେ ଥିବା ମଇଦାନ୍ ଭିତରେ କେତେଜଣ ଘୋଡ଼ସବାର୍ ଠିଆ ହୋଇଥିବାର ସେ ଦେଖିଲା । କିନ୍ତୁ ଆଉ ଟିକିଏ ଅଗ୍ରସର ହୋଇ ସେ ଦେଖିଲା, ସେ ଘୋଡ଼ସବାରମାନଙ୍କ ଭିତରେ ଅଛି ସେନାପତି ଅମରପାଳ ! ସେତିକି ନୁହେଁ, ଅମରପାଳ ସହ ଗୋଟିଏ ଚକ୍‌ମକ୍ ପୋଷାକ ପିନ୍ଧିଥିବା ବାଳକ ବି ଅଛି ! ଚନ୍ଦ୍ରସେନ ତା' ସହ ଯୁଦ୍ଧ କରିବାକୁ ଡରିଆରି କି ବୋଲି ତା' ମନରେ ଯେଉଁ ପ୍ରଶ୍ନ ଉଠିଥିଲା, ସେ ପ୍ରଶ୍ନ ଦୂର ହୋଇଗଲା । ଏ ବାଳକଟି ନିଶ୍ଚୟ ରାଜକୁମାର ହୋଇଥିବ !

"ରାକ୍ଷସରାଜ ! ପୁଣି ଥରେ ଆମ ଦାସୀମାନେ ତମକୁ ଠକି ଦେବାକୁ ଚେଷ୍ଟା କରୁଥିଲେ । କିନ୍ତୁ ମନେ କରିବ ନାହିଁ । ବର୍ତ୍ତମାନ ଏ ଅସଲ ରାଜକୁମାରକୁ ନେଇ ଯାଇପାର ।" ଅମରପାଳ କହିଲା ।



"ସବୁ ଦୋଷ ଦାସୀମାନଙ୍କର ?" ଉଗ୍ରାକ୍ଷ କ୍ରୋଧ ଦମନ କରି ହସି ଦେଲା । "ଏଥର ତମେ ଯେ ପୁଣି ମୋତେ ଭୁଲାଇବାର ଚେଷ୍ଟା କରୁନାହଁ, ସେକଥା କିଏ କହିବ ?"

"ନା, ଉଗ୍ରାକ୍ଷ, ଏ ବାଳକ ରାଜା ଚନ୍ଦ୍ରସେନଙ୍କ ପ୍ରଥମ ପୁତ୍ର ରାଜକୁମାର ଅମିତସେନ ।" ଅମରପାଳ ଏକଥା କହିଲା, କିନ୍ତୁ ତା' କଣ୍ଠସ୍ୱରରେ ଥିଲା ବିରକ୍ତି ଓ ଅସନ୍ତୋଷ ।

ଉଗ୍ରାକ୍ଷ ସେ ପିଲାକୁ ଭଲ କରି ଲକ୍ଷ୍ୟ କଲା । ଏଥର ତା'ର ମନେ ହେଲା, ଇଏ ସତ ରାଜକୁମାର । ସେ କହିଲା, "ଦୁଇ ଦୁଇଥର ମୋତେ ଖଟାଇଲ, ନିଜେ ବି ନିଜର ବଦ୍‌ନାମ କଲ । ମୋର ମିତ୍ର ହେବା ସତ୍ତ୍ୱେ ରାଜା ଚନ୍ଦ୍ରସେନ ଯେ କାହିଁକି ଏପରି କଲେ, ସେକଥା ମୁଁ ବୁଝିପାରୁ ନାହିଁ ।"

"ରାକ୍ଷସ ! ତମେ ମଣିଷ ବାପାମା'ଙ୍କ ବେଦନା କଥା କ'ଣ ବୁଝିବ ? ବର୍ତ୍ତମାନ ରାଣୀ କାନ୍ତିମତି ଚେତା ହରାଇ ଅନ୍ତଃପୁରରେ ପଡ଼ିଛନ୍ତି । ରାଜା ଶୋକରେ ମ୍ରିୟମାଣ ହୋଇ ନିଜ କକ୍ଷରୁ ବାହାରୁ ନାହାନ୍ତି । ରାଜା ଦିନେ ନଭାବି ନଚିନ୍ତି ତମକୁ କଥା ଦେଇ ପକାଇଥିଲେ । ଆଜି ତାଙ୍କୁ ତା'ର ପରିଣାମ ଭୋଗିବାକୁ ପଡ଼ୁଛି । ତମର ଭାବ ଅଛି ନା ଆବେଗ ଅଛି ଯେ ତମେ ସେସବୁ ବୁଝିବ ? ହେଉ, ଏଥର ଯାଅ ।" ଅମରପାଳ କହିଲା ।

"ଅବଶ୍ୟ, ଅବଶ୍ୟ । ମୋ କାମ ହୋଇ ଯାଇଛି ।" ଉଗ୍ରାକ୍ଷ କହିଲା । ତା'ପରେ ରାଜକୁମାରକୁ କାନ୍ଧରେ ବସାଇ କହିଲା, "ମୁଁ ଆଉ ଦିନେ ଆସି ରାଜାଙ୍କ ସହ ସାକ୍ଷାତ କରିବି ।"

"ଦେଖ ରାକ୍ଷସ, ରାଜକୁମାରଙ୍କର ଯେପରି କୌଣସି କଷ୍ଟ ନ ହୁଏ । ଅତି ସାବଧାନରେ ତାଙ୍କୁ ପାଳିପୋଷି ବଡ଼ କରିବ । ବୁଝିଲ ?" ଅମରପାଳ କଠୋର କଣ୍ଠରେ କହିଲା ।

ଅମରପାଳ ଖୁବ୍ ଉତ୍ତେଜିତ ହୋଇ ବୁଝିପାରି ଉଗ୍ରାକ୍ଷ କହିଲା, "ଆଜିଠାରୁ ଇଏ

ରାଜା ଚନ୍ଦ୍ରସେନଙ୍କ ପୁତ୍ର ଅମିତସେନ ନୁହେଁ; ମୋ ପୁଅ ଉଗ୍ରଦତ୍ତ । ବୁଝିଲ ?"

ଉଗ୍ରାକ୍ଷର ଉତ୍ସାହର ସୀମା ନଥାଏ । ସେ ବେଗରେ ଅଗ୍ରସର ହେଲା ଓ କାନ୍ଧରେ ବସିଥିବା ରାଜକୁମାରକୁ କହିଲା, "ପୁଅ, ତୁ ଆଜିଠାରୁ ମୋ ପୁଅ । ତୋ ସେବାରେ ଶହେ ରାକ୍ଷସ ନିଯୁକ୍ତ ରହିବେ । ତୁ ଯାହା କହିବୁ, ତାହା ହେବ ।"

ଉଗ୍ରାକ୍ଷର ଦୁର୍ଗ ଆଗରେ କେତେ ରାକ୍ଷସ ରାକ୍ଷସୀ ଠିଆ ହୋଇଥିଲେ । ଉଗ୍ରାକ୍ଷ ରାଜକୁମାରକୁ ଧରି ଫେରିବାର ଦେଖି ସେମାନେ ଜୟଧ୍ୱନି କଲେ । ଉଗ୍ରାକ୍ଷ ସେମାନଙ୍କୁ କହି ରଖିଥିଲା କି ଦିନେ ସେ ସେମାନଙ୍କ ଭାବି ରାଜାକୁ ଆଣି ସେମାନଙ୍କୁ ଦେଖାଇବ ।

"ଶୁଣ ସମସ୍ତେ । ଏ ବାଳକକୁ ମୋ ପୁତ୍ର ଜ୍ଞାନ କରିବ । ଏହାର ନାମ ହେଲା ଉଗ୍ରଦତ୍ତ । ଇଏ ହେଲା ତୁମର ଭାବି ନେତା ଓ ରାଜା ।"

ଏହା ଘୋଷଣା କରି ଉଗ୍ରାକ୍ଷ ବାଳକକୁ ନେଇ ନିଜ ପ୍ରାସାଦର ସବୁଠାରୁ ସୁନ୍ଦର ସଜ୍ଜିତ ଘର ଭିତରେ ରଖିଲା । ତା'ର ସବୁ ପ୍ରକାର ସ୍ୱାଚ୍ଛନ୍ଦ୍ୟର ବ୍ୟବସ୍ଥା କରିଦେଲା ।

ତା'ପରେ ସେ ତା'ର ଦୁଇଜଣ ବିଶ୍ୱସ୍ତ ଅନୁଚରଙ୍କୁ ଡାକି କହିଲା, "ଉଗ୍ରଦତ୍ତର ସମବୟସ୍କ ଯୋଡ଼ିଏ ମଣିଷ ପିଲା ସଂଗ୍ରହ କର । ଅତି ସାବଧାନରେ ଏ କାମ କରିବାକୁ ହେବ । ରାଜା ଚନ୍ଦ୍ରସେନ ଯେପରି ନ ଜାଣନ୍ତି ଯେ ଆମେ ରାକ୍ଷସମାନେ ମଣିଷ ପିଲା ଚୋରି କରୁଛୁଁ । ଯେଉଁଠାରୁ ପିଲାଟିଏ ଆଣିବ, ସେଠାରେ ସ୍ୱର୍ଣ୍ଣମୁଦ୍ରା ଭର୍ତ୍ତି ଏ ଥଳିଟିଏ ଥୋଇଦେବ ।" ଏହା କହି ଉଗ୍ରାକ୍ଷ ଅନୁଚର ଦୁଇଜଣଙ୍କ ଆଡ଼େ ଦୁଇଟି ଥଳି ଫୋପାଡ଼ି ଦେଲା ।

ଦିନକ ପରେ ସକାଳେ ଉଗ୍ରାକ୍ଷ ରାଜକୁମାରଙ୍କୁ ଖେଳାଉଛି, ସେ ଦୁଇ ଅନୁଚର ଦୁଇ ବାଳକଙ୍କୁ ଧରି ଆସି ପହଞ୍ଚିଲେ । ବାଳକ ଦୁଇଟି କାନ୍ଦୁଥିଲେ । (କ୍ରମଶଃ)






# ରାଜା ଓ ଡାକୁ

ନିଶା ଗରଜୁଥାଏ । ହୁହାଙ୍କୁ ହୁହା ଶୀତଳ ପବନ ସାଙ୍ଗକୁ ମଧ୍ୟେ ମଧ୍ୟେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତା'ପରେ ତାକୁ କାନ୍ଧରେ ପକାଇ ସେ ଶୂନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ ତାଙ୍କୁ କହିଲା, "ରାଜା! ତମେ ଏ ନିଶାର୍ଦ୍ଧରେ ଯେ ଏଭଳି ବିପଜ୍ଜନକ କାମ ହାତକୁ ନେଇଛ, ଏହା ପଛରେ ଉଦ୍ଦେଶ୍ୟ ସାଧାରଣ ହୋଇ ପାରେନା ।

## ବେତାଳ କଥା




ଅବଶ୍ୟ ଲକ୍ଷଣବନ୍ତ ରାଜ୍ୟରୁ ମଧ୍ୟେ ମଧ୍ୟେ ରାଜାଙ୍କ କର୍ମଚାରୀମାନେ ଯାଇ ତାଙ୍କୁ ଭେଟୁଥାନ୍ତି । ରାଜ୍ୟର ତୀର୍ଥଯାତ୍ରୀ ବା ବଣିକ-ମାନେ ମଧ୍ୟ ବାରାଣସୀ ଆସିଲେ ତାଙ୍କୁ ଭେଟୁଥାନ୍ତି । ସାଧାରଣତଃ ବଣିକମାନେ ତାଙ୍କ ପାଖରେ ଗୋଟାଏ ଭୀଷଣ ଡାକୁ ବିଷୟରେ କହୁଥାନ୍ତି । ଗଙ୍ଗାଧର ନାମକ ସେ ଡାକୁ ଯୋଗୁଁ ଲକ୍ଷଣବନ୍ତ ରାଜ୍ୟର ଲୋକେ ଆତଙ୍କିତ ବୋଲି ସେମାନେ ପ୍ରକାଶ କରୁଥାନ୍ତି । ସାଧାରଣ ତୀର୍ଥଯାତ୍ରୀମାନେ ମଧ୍ୟ ସେ ଡାକୁ ବିଷୟରେ କହୁଥାନ୍ତି, କିନ୍ତୁ ସେମାନଙ୍କ କଥାରେ ଡାକୁ ବିରୁଦ୍ଧରେ କିଛି ଅଭିଯୋଗ ଥିବାର ମନେ ହେଉ ନଥାଏ ।

କିନ୍ତୁ ଅନେକ ସମୟରେ ଉଦ୍ଦେଶ୍ୟ ପୂରଣ ଦିଗରେ ଠିକ୍ ଯେତେବେଳେ ପଦକ୍ଷେପ ନେବା କଥା, ସେତେବେଳେ କେହି କେହି ପଦକ୍ଷେପ ନିଅନ୍ତି ନାହିଁ । ଗୋଟିଏ ଘଟଣା କହୁଛି, ମନଦେଇ ଶୁଣ । ଶୁଣିଲେ ଶ୍ରମ ଭାର ଲଘୁ ମନେ ହେବ ।”

ବେତାଳ କହିଲା : “ଲକ୍ଷଣବନ୍ତ ରାଜ୍ୟରେ ରାଜୁତି କରୁଥିଲେ ରାଜା ଜୟାଦିତ୍ୟ । ତାଙ୍କ ପୁତ୍ର ଯୁବରାଜ ଅଭୟାଦିତ୍ୟ ବାରାଣସୀରେ ରହି ବିଦ୍ୟାଧ୍ୟୟନ କରୁଥିଲେ । ଶିକ୍ଷା ଦିଗରେ ତାଙ୍କର ବହୁତ ଆଗ୍ରହ ଥିବାରୁ ସେ ଗୁରୁ-କୁଳରେ ଶିକ୍ଷା ଲାଭ ସମାପ୍ତ ହେବା ପରେ ମଧ୍ୟ ସେହିଠାରେ ରହିଥାନ୍ତି ।

ହଠାତ୍ ଦିନେ ଯୁବରାଜ ଅଭୟାଦିତ୍ୟ ଖବର ପାଇଲେ କି ତାଙ୍କ ପିତା ଗୁରୁତର ଅସୁସ୍ଥ । ସେ ତତ୍‌କ୍ଷଣାତ୍ ଲକ୍ଷଣବନ୍ତ ଅଭିମୁଖେ ଚାଲିଲେ । କିନ୍ତୁ ସେ ରାଜଧାନୀରେ ପହଞ୍ଚିବା ବେଳକୁ ରାଜାଙ୍କର ମୃତ୍ୟୁ ହୋଇଗଲାଣି ।

ପରେ ପରେ ଅଭୟାଦିତ୍ୟ ସିଂହାସନରେ ବସିଲେ ଓ ରାଜ୍ୟ ଶାସନରେ ମନ ଦେଲେ । ମଂତ୍ରୀ, ସେନାପତି, କୋଟୁଆଲ, ସଭାସଦ୍‌ବର୍ଗ, ସମସ୍ତଙ୍କ ପାଖରୁ ସେ ଡାକୁ ସର୍ଦ୍ଦାର ଗଙ୍ଗାଧର କଥା ଶୁଣିଲେ । ତାଙ୍କର ଧାରଣା ହେଲା, ରାଜ୍ୟରେ ଆତଙ୍କର ବାତାବରଣ ରହିଛି । ଡାକୁକୁ ଯିଏ ଧରିଦେବ, ସିଏ ଏକଲକ୍ଷ ମୁଦ୍ରା ପୁରସ୍କାର ପାଇବ ବୋଲି ଘୋଷଣା ସତ୍ତ୍ୱେ

କେହି ତାଙ୍କୁ ଧରିପାରୁ ନଥିଲେ । ସେ ମନେକଲେ, ସେଭଳି ବାତାବରଣ ଦୂର କରିବା ତାଙ୍କର ପ୍ରଥମ କର୍ତ୍ତବ୍ୟ । ତାହା କରିବାକୁ ହେଲେ ଲୋକଙ୍କ ମନ ଉତ୍ସବ, ମେଳା ଇତ୍ୟାଦି ଆଡ଼କୁ ଆକୃଷ୍ଟ କରିବାକୁ ହେବ । ସୁସ୍ଥ ମୂଲ୍ୟବୋଧ ପ୍ରତି ଲୋକଙ୍କ ଆକର୍ଷଣ ଯେତିକି ମାତ୍ରାରେ ବଢ଼ିବ, ସେତିକି ମାତ୍ରାରେ ରାଜ୍ୟରେ ସ୍ୱାଭାବିକ ବାତାବରଣ ଫେରି ଆସିବ । ସଙ୍ଗେ ସଙ୍ଗେ ଡାକୁ ଗଙ୍ଗାଧରକୁ ଧରିବା ଦିଗରେ ଉତ୍ସାହ ସୃଷ୍ଟି ପାଇଁ ସେ ପୁରସ୍କାର ପରିମାଣ ଦେଢ଼ଲକ୍ଷ କରିଦେଲେ ।



ସେ ଗୋଟିଏ ବିରାଟ ଉତ୍ସବ ପାଇଁ ଯୋଜନା କଲେ । ସେଥିରେ ସଙ୍ଗୀତ, ନୃତ୍ୟ, ଖେଳ କସରତ ଇତ୍ୟାଦିରେ ଦକ୍ଷତା ଲାଭ କରିଥିବା ବ୍ୟକ୍ତିମାନଙ୍କୁ ସମ୍ମାନ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ରାଜ୍ୟରେ ଯିଏ ସବୁଠାରୁ ଜନପ୍ରିୟ ବ୍ୟକ୍ତି ହୋଇଥିବ, ତାଙ୍କୁ ମଧ୍ୟ ଅଭିନନ୍ଦନ ଜଣାଇବା ନିମନ୍ତେ ସେ ସ୍ଥିର କଲେ ।

ମାସକ ପରେ ସେ ଚରମାନଙ୍କଠାରୁ ଯାହା ଶୁଣିଲେ, ସେଥିରେ ତାଙ୍କର ବିସ୍ମୟର ସୀମା ରହିଲା ନାହିଁ । ସବୁ ଚର ତାଙ୍କୁ କହିଲେ କି ରାଜ୍ୟର ଜନସାଧାରଣଙ୍କ ପାଖରେ ସବୁଠାରୁ ଜନପ୍ରିୟ ବ୍ୟକ୍ତି ହେଲା ଡାକୁ ସର୍ଦ୍ଦାର ଗଙ୍ଗାଧର !

ଯୁବକ ରାଜା ନିଜେ ନିଜ ବିସ୍ମୟ ଦମନ କରି ଏହାର ରହସ୍ୟ ଉଦ୍‌ଘାଟନ ପାଇଁ ଆଗ୍ରହୀ ହେଲେ । ଡାକୁ ଗଙ୍ଗାଧର ସମ୍ପର୍କରେ ସେ ପର୍ଯ୍ୟନ୍ତ ତାଙ୍କ କୋତୁଆଳ ଯେତେ ଗୋପନ ତଥ୍ୟ ସଂଗ୍ରହ କରିଥିଲେ, ସେ ସେସବୁ ଧ୍ୟାନ ଦେଇ ପଢ଼ିଲେ । ଗଙ୍ଗାଧରର ଦଳର ସବୁ ଲୋକ ଥିଲେ ବିଚକ୍ଷଣ ଡାକୁ । ସେମାନେ ଗଙ୍ଗାଧରକୁ ତିନି ଚାରି ପ୍ରକାର ସାଙ୍କେତିକ ଶବ୍ଦ ଦ୍ୱାରା ଏପରି ଭାବରେ ସତର୍କ କରି ଦେଉଥିଲେ ଯେ, ଗଙ୍ଗାଧର ଅକ୍ଳେଶରେ ସିପାହୀମାନଙ୍କ କବଳରୁ ଖସି ଯାଉଥିଲା ।

ରାଜା ଆହୁରି ମଧ୍ୟ ଦେଖିଲେ ଯେ ଗଙ୍ଗାଧର ଯେତେ ଲୋକଙ୍କଠୁଁ ଚୋରି କରିଛି ବା ଧନ ଛଡ଼ାଇ ନେଇଛି, ସେମାନେ ସମସ୍ତେ ବିଶିଷ୍ଟ ବଣିକ ବା ଜମିଦାର ।




ରାଜା ତାଙ୍କ ମଂତ୍ରୀଙ୍କୁ ସାଥିରେ ଧରି ରାଜ୍ୟ ବୁଲି ବାହାରିଗଲେ । କହିବା ବାହୁଲ୍ୟ, ଉଭୟେ ଛଦ୍ମବେଶ ପକାଇଥାନ୍ତି । ସେ ଦୁହିଁଙ୍କୁ ଅନୁସରଣ କଲେ କେତେଜଣ ସୁଦକ୍ଷ ସିପାହୀ । ସେମାନେ ବି ଛଦ୍ମବେଶରେ ଥାନ୍ତି । ରାଜା ମଂତ୍ରୀଙ୍କ ସହ ସେମାନେ ସେବେ ବି କଥା ହେଉ ନଥାନ୍ତି । ଦରକାର ପଡ଼ିଲେ ମଂତ୍ରୀ ସିଟି ବଜାଇବେ ଓ ସେମାନେ ତତ୍‌କ୍ଷଣାତ୍ ଆସିବେ, ଏହି ହେଲା ବ୍ୟବସ୍ଥା ।

ସେମାନେ ଏଣେ ତେଣେ ରାତି ଯାପନ କଲାବେଳେ ବା ବିଶ୍ରାମ ନେଲାବେଳେ ପଡ଼ୋଶୀ ରାଜ୍ୟରୁ ଆଗନ୍ତୁକ ପରିବ୍ରାଜକ ଭାବରେ ନିଜର ପରିଚୟ ଦେଉଥିଲେ । ସେମାନେ ଯେଉଁ ଲୋକଙ୍କ ସହ କଥା ହେଉଥିଲେ, ସମସ୍ତେ ଡାକୁ ଗଦାଧର କଥା ପଡ଼ିଲେ ତା' ପ୍ରତି ଶ୍ରଦ୍ଧାଭାବ ଦେଖାଉଥିଲେ ।

ଦିନେ ରାତିରେ ରାଜା ଓ ମଂତ୍ରୀ ଦୁହେଁ ଗୋଟିଏ ଚଟିଘରେ ରହିଥାନ୍ତି, ସେଠାରେ ସୁମିତ୍ର ନାମକ ଜଣେ ଯୁବକ ସହ ସେମାନଙ୍କର ପରିଚୟ ହେଲା । ଛଦ୍ମବେଶୀ ରାଜା ଗପ-ସପରେ ବହୁତ ଚତୁର ଥିଲେ । ସେ ସୁମିତ୍ର ସହ ଗପ ଜମାଇ କହିଲେ, "ହଇହେ, ତମ ରାଜ୍ୟର ଡାକୁ ଗଦାଧରକୁ ଧରିଦେଲେ ଦେଢ଼ ଲକ୍ଷ ଟଙ୍କା ପୁରସ୍କାର ମିଳିବ ଶୁଣି ମୋର ଭାରି ଲୋଭ ହେଉଛି । ତମେ ତ ଏ ରାଜ୍ୟର ଲୋକ । ଆମକୁ ସାହାଯ୍ୟ କର । ଆମେ ତାକୁ ଧରିବା ଦିଗରେ ଚେଷ୍ଟା କରନ୍ତୁ !"

ସୁମିତ୍ର ହସିଲା ଓ କହିଲା, "ଦେଢ଼ ଲକ୍ଷ ଛାଡ଼ ଦେଢ଼ କୋଟି ପୁରସ୍କାର ଘୋଷଣା କଲେ ବି ତାକୁ କେହି ଧରିପାରିବେ ନାହିଁ । ଲୋକେ ତାକୁ ଦେବତା ଭଳି ଦେଖନ୍ତି ।"

"ସୁମିତ୍ର, ଏହା ଲୋକଙ୍କ ପକ୍ଷରେ ରାଜଦ୍ରୋହ ବୋଲି କହିବାକୁ ହେବ ।" ରାଜା କହିଲେ ।

"ପଥିକ ! ତମେ ଏ ରାଜ୍ୟର ଅବସ୍ଥା ଜାଣନା । ବର୍ତ୍ତମାନ ଅବଶ୍ୟ ନୂଆ ରାଜା ସିଂହାସନରେ ବସିଛନ୍ତି । ତାଙ୍କ ଶାସନ କପରି ହେବ, ଆମେ ଜାଣୁନା । କିନ୍ତୁ ପୁରୁଣା ରାଜା କିଛି ବୁଝୁ ନଥିଲେ । ତାଙ୍କ ମଂତ୍ରୀଙ୍କ ପରାମର୍ଶ



ପ୍ରତି ଖାତିର କରୁ ନଥିଲେ । ଫଳରେ କର୍ମଚାରୀମାନେ ପ୍ରଜାଙ୍କ ଉପରେ ଅକଥ୍ୟ ଅତ୍ୟାଚାର କରୁଥିଲେ । ଗରୀବମାନଙ୍କୁ ବି କର ପାଇଁ ନିର୍ଯ୍ୟାତନା ଦେଉଥିଲେ । ଗଙ୍ଗାଧର କେବେ ବି ସାଧାରଣ ଲୋକଙ୍କ ଉପରେ ଡ଼କାଏତି କରେ ନାହିଁ । ସେ ଠକ, ଶଠ ବେପାରୀ ଓ ଅତ୍ୟାଚାରୀ ଜମିଦାରଙ୍କଠୁଁ ଧନ ଛଡ଼ାଇ ନେଇ ଗରୀବ ଲୋକଙ୍କୁ ଦିଏ । ରୋଗୀର ଚିକିତ୍ସା ପାଇଁ ବିପଦରେ ପଡ଼ିଥିବା ଲୋକର ସାହାଯ୍ୟ ପାଇଁ ସେ ଧନ ଖର୍ଚ୍ଚ କରେ । ତେଣୁ ଲୋକେ ତାକୁ ଦେବତା ଭଳି ନ ମାନିବେ କିଆଁ ?" ସୁମିତ୍ର କହିଲା ।

ହଠାତ୍ ସୁମିତ୍ର ଟିକିଏ ଚମକି ପଡ଼ିଲା ବୋଲି ରାଜା ଲକ୍ଷ୍ୟ କଲେ । ରାଜା ଆଡ଼ୁଆର ବୁଝିଲେ, ଦୂରରୁ କୋଇଲି ଗାଉଛି । ସେତେବେଳେ କୋଇଲି ରାବିବା ଥିଲା ଅସ୍ୱାଭାବିକ ।

"ମୁଁ ଆସୁଛି" କହି ସୁମିତ୍ର ଚାଲିଗଲା । କିନ୍ତୁ ସେ ଆଉ ଆସିଲା ନାହିଁ ।

ପରଦିନ ରାଜା ଓ ମଂତ୍ରୀ ରାଜଧାନୀକୁ ଫେରିଗଲେ । ରାଜା ହସି ହସି କହିଲେ, "ମନ୍ତ୍ରୀ, ଗଙ୍ଗାଧରର ବଳ ଏମିତି ବେଶି ନୁହେଁ !"

ମଂତ୍ରୀ ହସି ଦେଇ କହିଲେ, "ଆପଣ ତେବେ ବୁଝି ପାରିଥିଲେ ଯେ ସୁମିତ୍ରହିଁ ଗଙ୍ଗାଧର ? ତା' ଚରମାନେ ଆମ ଛଦ୍ମବେଶୀ ସିପାହୀଙ୍କୁ ଦେଖି ସନ୍ଦେହ କରି କୋଇଲି ଡାକ ଡାକି ତାକୁ ନେଇଗଲେ ।"

ଏହାପରେ ରାଜା ଯଥାବିଧି ଉତ୍ସବ କଲେ । କିନ୍ତୁ ସବୁଠାରୁ ଜନପ୍ରିୟ ବ୍ୟକ୍ତି ପାଇଁ ସେ କିଛି ବ୍ୟବସ୍ଥା ନକରି ଅନ୍ୟ ସବୁ ବିଭାଗରେ ଉପଯୁକ୍ତ ବ୍ୟକ୍ତିମାନଙ୍କୁ ପୁରସ୍କାର ଦେଲେ । ଶାସନ କାର୍ଯ୍ୟକୁ ସେ ଗଭୀର ମନଦେଇ ପରିଚାଳନା କଲେ । ଗରୀବମାନଙ୍କ ଉପରୁ କର ଛାଡ଼ ହେଲା । ଅକ୍ଷମମାନଙ୍କୁ ସାହାଯ୍ୟ ଦିଆଗଲା । ଦୁର୍ନୀତିଗ୍ରସ୍ତ ବେପାରୀ ଓ ଅତ୍ୟାଚାରୀ ଜମିଦାରମାନଙ୍କୁ ଦଣ୍ଡ ଦିଆଗଲା ।

ବର୍ଷେ ଦୁଇବର୍ଷ ପରେ ଡାକୁ ଗଙ୍ଗାଧରର ନାମ ଆଉ ଶୁଣାଗଲା ନାହିଁ । କ୍ରମେ ରାଜା ହେଲେ ଲୋକଙ୍କର ସବୁଠାରୁ ଭଲ ପ୍ରିୟ ପାତ୍ର ।

ବେତାଳ କାହାଣୀଟି କହିସାରି ମୁହୂର୍ତ୍ତେ ନୀରବ ରହି ତୀବ୍ର କଣ୍ଠରେ ପଚାରିଲା, "ରାଜା! ମୋର ଗୋଟାଏ ସନ୍ଦେହ ରହିଛି । ରାଜା ଓ ମଂତ୍ରୀ ଡାକୁ ଗଜାଧରଙ୍କୁ ଏକୁଟିଆ ପାଇଥିଲେ । ମନ୍ତ୍ରୀ ସିଟି ବଜାଇଥିଲେ ସିପାହୀମାନେ ଦୌଡ଼ି ଆସିଥାନ୍ତେ ଓ ଗଜାଧର ଧରାପଡ଼ିଥାନ୍ତା, ରାଜା ତାହା ନକରି ତାଙ୍କୁ ଖସି ଯିବାକୁ ଦେଲେ କାହିଁକି ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ଉତ୍ତର ଦେଲେ, "ରାଜା ବୁଝିଲେ ଯେ ଯେଉଁ ସବୁ କାମ ରାଜଦରବାର ତରଫରୁ ହେବା ଉଚିତ, ସେସବୁ କାମ ଗଜାଧର କରୁଛି । ଗଜାଧର ଅନ୍ୟାୟକାରୀଠୁଁ ଅର୍ଥ ଛଡ଼ାଇ ଆଣି ଦରିଦ୍ର ଓ ଅକ୍ଷମଙ୍କୁ ସାହାଯ୍ୟ କରୁଛି । ତେଣୁ ସେ ଜନପ୍ରିୟ । ରାଜା ତାଙ୍କୁ ଧରି ପାରିଥାନ୍ତେ ଠିକ୍ । କିନ୍ତୁ ଧରି କରିଥାନ୍ତେ କ'ଣ ? ଯଦି ସବୁଠାରୁ ଜନପ୍ରିୟ ବ୍ୟକ୍ତି ଭାବରେ ତାଙ୍କୁ ଅଭିନନ୍ଦନ ଦେଇଥାନ୍ତେ, ତେବେ ତାହା ଡକାଏତି ପନ୍ଥାର ସମର୍ଥନ ହୋଇଥାନ୍ତା । ଗଜାଧର ଯିନା ଥିଲା ଦସ୍ୟୁ, କିନ୍ତୁ ଡାକୁମାନେ ନୁର । ଡକାଏତକୁ ରାଜକୀୟ ସ୍ୱୀକୃତି ଦିଆଯାଇ ନପାରେ । ଆଚ୍ଛା, ରାଜା ତାଙ୍କୁ ପ୍ରାଣଦଣ୍ଡ ଦେଇ ପାରିଥାନ୍ତେ । କିନ୍ତୁ ତାହା ହେଲେ ରାଜ୍ୟରେ ବିଦ୍ରୋହ ହୋଇଥାନ୍ତା । ଏ ଦୁଇଟିକୁ ଗୋଟିଏ ବି କାମ ନକରି ରାଜା ନିଜ ଶାସନକୁ ଦୃଢ଼ କଲେ ଓ ଜନହିତକର କାର୍ଯ୍ୟ କଲେ । କ୍ରମେ ଡାକୁ ଗଜାଧରର ଆବଶ୍ୟକତା ରହିଲା ନାହିଁ । ଲୋକେ ତା' କଥା ଭୁଲି ଗଲେ । ରାଜା ବୁଦ୍ଧିମାନ ଓ ଜ୍ଞାନୀ । ସବୁଠାରୁ ଭଲ ପ୍ରତିକାର ସେ କଲେ ।"

ରାଜାଙ୍କ ଉତ୍ତର ଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)





# ମୌନାବତୀ

ଅବନ୍ତୀର ରାଜକନ୍ୟା କୃଷ୍ଣକୁମାରୀ ରୂପରେ ତଥା ଗୁଣରେ ସମସ୍ତଙ୍କୁ ମୁଗ୍ଧ କରିଦେଉଥିଲେ । ତେଣୁ ତାଙ୍କୁ ବୋହୂ କରି ଘରକୁ ନେବାକୁ ଆଖପାଖର କେତେ ରାଜପରିବାରରୁ ପ୍ରସ୍ତାବ ଆସୁଥିଲା ।

"ଝିଅ, ତୁ କାହାକୁ ବାହାହେବୁ ତାହା ଠିକ୍ କରି ପକା ।" ରାଜା କୃଷ୍ଣକୁମାରୀଙ୍କୁ କହିଲେ ।

"ବାପା ! କୌଣସି ରାଜପରିବାରରେ ଯାଇ କଣ୍ଢେଇ ହୋଇ ରହିବା ପାଇଁ ମୋର ଇଚ୍ଛା ନାହିଁ । ମୁଁ ଯାହାକୁ ବରି ହେବି, ସେ ଖୁବ୍ ଚତୁର ହୋଇଥିବା ଆବଶ୍ୟକ ।" ରାଜକୁମାରୀ କହିଲେ ।

ରାଜା କହିଲେ, "ସେଥିରେ ମୋର ଆପତ୍ତି ନାହିଁ । କିନ୍ତୁ ଚତୁର କିଏ ସେକଥା କିପରି ଠଉରାଇବା ?"

"ସେକଥା ମୋ ଉପରେ ଛାଡ଼ିଦିଅ ।" ରାଜକନ୍ୟା କହିଲେ ।

ଏହାପରେ ପରେ ପ୍ରଚାର ହେଲା ଯେ ରାଜକନ୍ୟା କାହାରି ଶାପ ଯୋଗୁଁ କଥା କହିପାରୁ ନାହାନ୍ତି । ସିଏ କୌଣସି ଔଷଧ ବି ଖାଆନ୍ତି ନାହିଁ । କେହି ଯଦି ତାଙ୍କୁ କଥା କୁହାଇ ପାରିବ, ସେ ତାଙ୍କୁ ବରି ହେବେ ।

କେତେ ଯୁବକ ଆସିଲେ । କିଏ ତାଙ୍କ ସ୍ତୁତିଗାନ କଲା ତ କିଏ ନାନା ପ୍ରକାର କୌତୁହଳଜନକ ଧନ୍ଦା ବା ତଗଡ଼ମାଲ କହି ତା'ର ଉତ୍ତର ଆଦାୟ କରିବା ଆଳରେ ତାଙ୍କୁ କଥା କୁହାଇବାକୁ ଚେଷ୍ଟା କଲେ, କିନ୍ତୁ ସେଥିରେ ବ୍ୟର୍ଥ ହେଲେ ।

ସେତିକିବେଳେ କଳିଙ୍ଗର ଏକ ରାଜ୍ୟର ରାଜପୁତ୍ର ପ୍ରବୀଣକୁମାର ଅବନ୍ତୀ ପରିଭ୍ରମଣରେ ଆସି ରାଜକୁମାରଙ୍କର ଏ ଅବସ୍ଥା କଥା

ଶୁଣିଲେ ଓ ତାଙ୍କୁ ସାକ୍ଷାତ୍ କରି ହଠାତ୍ ଆଶ୍ଚର୍ଯ୍ୟ ହେବା ସ୍ୱରରେ କହିଲେ, "ଆରେ, ଆରେ, ତମେ ଏଠି? ତମେ ତେବେ ଅବନ୍ତୀର ରାଜକନ୍ୟା? ସେଦିନ ସେ ଝଡ଼-ରାତିରେ କ'ଣ କହିଲ ମୁଁ ବୁଝିପାରିଲି ନାହିଁ।"

"କେଉଁ ଝଡ଼ରାତିରେ?" ରାଜା ପଚାରିଲେ।

"ଦିନେ ଏ ରାଜକୁମାରୀ ତାଙ୍କ ମାମୁଁ ଘରୁ ଫେରୁଥିବା ବେଳେ ଝଡ଼ ହେଲା। ସେତେ-ବେଳକୁ ରାତି। ତାଙ୍କ ପାଲିଙ୍କି ଉପରେ ଚଢ଼ାଉ କଲେ ଡାକୁ ଦଳ। ଦୈବାତ୍ ମୁଁ ସେ ବାଟରେ ଯାଉଥିଲି। ସେମାନେ ଏହାଙ୍କୁ ଧରିନେବା ପୂର୍ବରୁ ମୁଁ ଏହାଙ୍କୁ ପାଲିଙ୍କିରୁ ଟାଣି ନେଇଗଲି ଗୋଟିଏ ମନ୍ଦିର ଭିତରୁ। ଡାକୁଦଳ କବଳରୁ ରକ୍ଷା ପାଇ ରାଜକୁମାରୀ ଖୁସି ହୋଇଗଲେ ଓ ମୁଁ ଜଣେ ରାଜପୁତ୍ର ବୋଲି ଜାଣି ମୋତେ ମନ୍ଦିର ଭିତରେ ବିଭା ହେଲେ।" ପ୍ରବୀଣକୁମାର ଏଭଳି ଅଭିନୟ କରି କହିଲେ ଯେ ସତେ ଅବା ଏପରି ଘଟଣା ଘଟିଥିଲା! ସମସ୍ତେ ତାଙ୍କ କଥା ଶୁଣି କାବା ହୋଇଗଲେ ଓ ନିଜ ନିଜ ଭିତରେ ଗୁଣୁଗୁଣୁ ହୋଇ ମନ୍ତବ୍ୟମାନ ଦେଲେ।

ତଥାପି ରାଜକନ୍ୟା ମୌନ ରହିଲେ। ହଠାତ୍ ପ୍ରବୀଣକୁମାର ରାଜାଙ୍କୁ କହିଲେ, "ମହାରାଜ, ଆଉ ଡେରି କାହିଁକି? ରାଜକନ୍ୟା ଏତେଦିନ କାହିଁକି ବିଭା ହେବାକୁ ରାଜି ନଥିଲେ ବୋଲି ଭାବୁଛନ୍ତି? ସେ ମୋ ଅପେକ୍ଷାରେ ଥିଲେ। ମୁଁ ବି ସେହି ଦିନରୁ ରାଜ୍ୟ ରାଜ୍ୟ ବୁଲି ତାଙ୍କୁ ଖୋଜୁଥିଲି!"

"ମିଛ କଥା!" ରାଜକନ୍ୟା କହିଲେ।

"ଧନ୍ୟବାଦ। ଏଥର ତ ମିଛ କଥାକୁ ଆପଣ ସତ କଥାରେ ପରିଣତ କରିବାକୁ ବାଧ୍ୟ!" ପ୍ରବୀଣକୁମାର କହିଲେ।

ସମସ୍ତେ ହସିଲେ। ବାସ୍ତବିକ୍ ସର୍ତ୍ତ ଅନୁସାରେ ତାଙ୍କ ମୌନଭଙ୍ଗ କରିପାରି-ଥିବାରୁ ପ୍ରବୀଣକୁମାରଙ୍କୁ ରାଜକନ୍ୟା ବିଭା ହେଲେ।



ଭାରତର ଇମାରତ

# ଜିଞ୍ଜି ଦୁର୍ଗ




ତାମିଲ୍‌ନାଡୁର ଦକ୍ଷିଣ ଆର୍କୋଟ ଜିଲ୍ଲାରେ ତିନିଗୋଟି ପାହାଡ଼ ବ୍ୟାପି ରହିଛି ଜିଞ୍ଜି ଦୁର୍ଗର ଭଗ୍ନାବଶେଷ । ଏ ଦୁର୍ଗର ଇତିହାସ ଦକ୍ଷିଣ ଭାରତର ଇତିହାସକୁ ଅନେକ ମାତ୍ରାରେ ପ୍ରତିଫଳିତ କରୁଛି । ଚୈଳ, ହୟଶାଳ, ବିଜୟନଗର ଇତ୍ୟାଦି ସ୍ଥାନୀୟ ରାଜବଂଶ ସାଙ୍ଗକୁ ଏ ଦୁର୍ଗ ଏକଦା ମରହଟ୍ଟା ଓ ମୋଗଲମାନଙ୍କ ଦଖଲ୍‌ରେ ବି ରହିଥିଲା ।



କିମ୍ବଦନ୍ତି କହେ, ଆନନ୍ଦ କୋଲ୍ ନାମକ ଗୋଟିଏ ଗୋରୁଜଗା ପିଲା ପାହାଡ଼ ଉପରକୁ ତା' ଗୋଠ ନେଇଯାଇଥିବା ବେଳେ ହଠାତ୍ ଗୋଟିଏ ସୁନା ଠଙ୍କା ଥିବା ଗରା ପାଇଗଲା । ସେହି ଅର୍ଥବଳରେ ସେ ଗୋଟିଏ ଦଳ ତିଆରି କଲା ।

କିଛିଦିନ ପରେ ସେ ନିଜକୁ ରାଜା ବୋଲି ଘୋଷଣା କଲା ଓ ଆଖପାଖର ଛୋଟ ଛୋଟ ଜମିଦାରମାନଙ୍କୁ ହରାଇ ନିଜ ରାଜ୍ୟ ଗଠନ କରି ରାଜଗିରି ନାମକ ପାହାଡ଼ ଉପରେ ନିଜ ନଗର ନିର୍ମାଣ କଲା ।





ଯେଉଁଠି ନଗର ନିର୍ମାଣ ହେଲା, ସେଠାକୁ କୌଣସି ଶତ୍ରୁ ଯିବା ସହଜ ନଥିଲା । ନଗର ଓ ଏପଟର ପାହାଡ଼ ମଝିରେ ଥିଲା ଗୋଟିଏ ଗଭୀର ଗଡ଼ି । କାଠ ପୋଲ ଉପରେ ଦେଇ ନଗରକୁ ଯାଇ ପୋଲଟି ସେପଟକୁ ଉଠାଇ ନେଲେ ଆଉ କେହି ଯାଇପାରୁ ନଥିଲେ ।

ଇତିହାସର ଭିନ୍ନ ଭିନ୍ନ ପର୍ଯ୍ୟାୟରେ ଜିଞ୍ଜି ଦୁର୍ଗର ଅଧିପତିମାନେ ଭିନ୍ନ ଭିନ୍ନ ରାଜା ବା ସମ୍ରାଟ ପ୍ରତି ଆନୁଗତ୍ୟ ଦେଖାଉଥିଲେ । ନାୟକ ବଂଶର ରାଜୁତି ବେଳେ ବିଜାପୁର ସୁଲତାନଙ୍କ ସୈନ୍ୟବାହିନୀ ଏହା ଭିତରକୁ ମାଡିଆସିଥିଲେ ଓ କୋଡିଏ କୋଟି ଟଙ୍କା ଲୁଟି ନେଇଥିଲେ ।






ତା'ପରେ ଆସିଲେ ବିଖ୍ୟାତ ମରହଟ୍ଟା ବୀର ଶିବାଜୀ । କର୍ଣ୍ଣାଟକ ଅଭିଯାନ ବେଳେ ସେ ଏ ଦୁର୍ଗ ଅଧିକାର କଲେ । କିନ୍ତୁ ସେ ଏଠାରେ ବେଶି ଦିନ ରହିପାରି ନଥିଲେ । ତାଙ୍କ ମୃତ୍ୟୁ ପରେ ଏ ଦୁର୍ଗ ଉପରୁ ମରହଟ୍ଟା ଆଧିପତ୍ୟ ଲୁପ୍ତ ହେଲା ।

ସେତେବେଳେ ଜିଞ୍ଜିରେ ରାଜୁତି କରୁଥିଲେ ଜଣେ ବାଇଶ ବର୍ଷ ବୟସ୍କ ଯୁବକ ରାଜା, ଦେଶିଙ୍ଗ । ମୋଗଲ ବାଦଶା ଆର୍କୋଟର ନବାବଙ୍କୁ ସେ ଦୁର୍ଗ ଦଖଲ କରିନେବାକୁ ନିର୍ଦ୍ଦେଶ ଦେଲେ । ରାଜା ଦେଶିଙ୍ଗ ନିକଟବର୍ତ୍ତୀ ଶ୍ରୀରଙ୍ଗନାଥଙ୍କ ମନ୍ଦିରକୁ ଯାଇ ଆଖି ବନ୍ଦ କରି ପ୍ରାର୍ଥନା କଲେ । ସେ ଆଖି ଖୋଲିବା ବେଳକୁ ଦିଅଁଙ୍କ ମଥା ଅନ୍ୟ ଦିଗକୁ ବୁଲି ଯାଇଛି !






ଏହାର ଅର୍ଥ ତାଙ୍କର ପରାଜୟ ନିଶ୍ଚିତ ବୋଲି ସେ ବୁଝିଲେ । ତଥାପି ସାତବର୍ଷ କାଳ ରାଜା ଦେଶିଙ୍ଗ ଶତ୍ରୁକୁ ଦୁର୍ଗ ଭିତରେ ପଶିବାକୁ ସୁଯୋଗ ଦେଲେନାହିଁ । ଅବଶେଷରେ ନବାବ୍‌ର ସୈନ୍ୟବାହିନୀ ସହ ପ୍ରତ୍ୟକ୍ଷ ଲଢ଼େଇରେ ସେ ପ୍ରାଣ ଦେଲେ । ତାଙ୍କ ରାଣୀ ଚିତାରେ ପ୍ରାଣ ବିସର୍ଜନ ଦେଲେ ।

ଜିଞ୍ଜି ର ଗୌରବମୟ ଇତିହାସ ଉପରେ ସେହିଠାରେ ଯବନିକା ପତନ ହେଲା । ଆଜି ଦୁର୍ଗର ଭଗ୍ନାବଶେଷ ଦେଖିବା ନିମନ୍ତେ ଲୋକେ ବହୁ ଅଞ୍ଚଳରୁ ସେଠାକୁ ଆସିଥାନ୍ତି । ତିଷ୍ଠି ରହିଥିବା ଇମାରତ୍ ସବୁ ଭିତରେ ଅନ୍ୟତମ ହେଲା କଲ୍ୟାଣ ମହଲ ।





ଗୋଟିଏ ଶିଖର ଉପରେ ରହିଛି ଗୋଟିଏ କୂପ । ମୃତ୍ୟୁ-ଶିଖର ବୋଲି ଅଭିହିତ ଏ କୂପ ଭିତରକୁ ପ୍ରାଣଦଣ୍ଡରେ ଦଣ୍ଡିତ ବ୍ୟକ୍ତିମାନଙ୍କୁ ଠେଲି ଦିଆ ହେଉଥିଲା । ଦୁର୍ଗର ଘୋଡ଼ାଶାଳ ମଧ୍ୟ ଆଜି ଗୋଟିଏ ଦର୍ଶନୀୟ କୋଠା ।



# ବୁଢ଼ା ବର

ନାରାୟଣପୁରର ରାମବାବୁ ଜଣେ ଥିଲାବାଲା ଲୋକ । ଦୋକାନଟିଏ କରି ବେଶ୍ ଭଲ ଦୁଇପଇସା ଆୟ କରିଥିଲେ । ତା'ର କାରଣ, ସେ ଥିଲେ ସାଧୁ ବ୍ୟବସାୟୀ । ଅନ୍ୟାୟରେ ଦାମ ଅଧିକ ନେବା, ଭେଜାଲ୍ କରିବା, ଏସବୁ ତାଙ୍କୁ ଜଣା ନଥିଲା । ତେଣୁ ତାଙ୍କ ଦୋକାନରୁ ଖାଲି ନାରାୟଣପୁରର ଲୋକେ ନୁହନ୍ତି, ଆଖପାଖ ଅନେକ ଗାଁର ଲୋକେ ଆସି ଜିନିଷ କଣାକଣି କରୁଥିଲେ ।

ରାମବାବୁ ଅନେକ ଦିନରୁ ତାଙ୍କ ସ୍ତ୍ରୀଙ୍କୁ ହରାଇଥିଲେ । ତାଙ୍କର ଏକମାତ୍ର ପୁଅକୁ ସେ ଭଲ ଶିକ୍ଷା-ଦୀକ୍ଷା ଦେଇଥିଲେ । ପୁଅ ସୁବ୍ରତ ଏଣିକି ବାପାଙ୍କ ଦୋକାନର ଦାୟିତ୍ୱ ନେଇଥିଲା । ତା' ସ୍ତ୍ରୀ ଲକ୍ଷ୍ମୀ ଭଲ ଭାବରେ ଘର ସମ୍ଭାଳୁଥିଲା । ରାମବାବୁ ଗାଁର ଭଲମନ୍ଦ ବୁଝି ସମୟ ଅତିବାହିତ କରୁଥିଲେ ।

ଲୋକେ ତାଙ୍କୁ ବହୁତ ସମ୍ମାନ କରୁଥିଲେ । ସବୁ ବିଷୟରେ ସେ ଯେଉଁ ମତ ଦେଉଥିଲେ, ତାହାହିଁ ଚୂଡ଼ାନ୍ତ ବୋଲି ଧରି ନିଆ ହେଉଥିଲା ।

କିନ୍ତୁ ଦିନେ ସେ ଗୋଟାଏ ଆଚମ୍ବିତ ହେଲାଭଳି କାମ କଲେ । ସେ ପାଖ ଗାଁର ହରି ପଣ୍ଡାଙ୍କୁ ଡକାଇ କହିଲେ, "ପଣ୍ଡାପୁଅ, ପ୍ରାୟ ସତୁରି ବର୍ଷର ବରକୁ ବିଭା ହେଲାଭଳି ଗୋଟିଏ ସୁନ୍ଦରୀ କନ୍ୟା ଠିକଣା କରି ପାରିବ ?"

ହରି ପଣ୍ଡା ବର ପାଇଁ କନ୍ୟା ଓ କନ୍ୟା ପାଇଁ ବରପାତ୍ର ଯୁଟାଇବାରେ ସେ ଅଞ୍ଚଳରେ ବିଖ୍ୟାତ ଥିଲେ । ସେ ପ୍ରଥମେ ଟିକିଏ କାବା ହୋଇ ରାମବାବୁଙ୍କ ମୁହଁକୁ ଅନାଇଲେ । ସେତେବେଳେ ରାମବାବୁଙ୍କ ବୟସ ପ୍ରାୟ ସତୁରି । ସେ କ'ଣ ତେବେ ପୁଣି ବିଭା ହେବା ପାଇଁ ମନ କରୁଛନ୍ତି ? ପ୍ରଥମେ ଆଶ୍ଚର୍ଯ୍ୟ

ସୁରେନ୍ଦ୍ର ନାଥ



ସେ ବୁଢ଼ାଙ୍କର ଏ କଥାବାର୍ତ୍ତା ଶୁଣିଥିଲା ବୋଧହୁଏ । ତା'ର ବିସ୍ମୟର ସୀମା ରହିଲା ନାହିଁ । ସନ୍ଧ୍ୟାବେଳେ ସୁବ୍ରତ ଘରକୁ ଫେରିବା ମାତ୍ରେ ସେ ଉତ୍କଣ୍ଠିତ ଭାବରେ ତାକୁ କହିଲା, "ଶୁଣିଲଣି ? ଶ୍ୱଶୁର ମୋ ପାଇଁ ନୂଆ ଶାଶୁଟିଏ ଆଣିବାକୁ ବାହାରିଛନ୍ତି । ମୋଠୁଁ ବୟସରେ କମ୍ ହେବାହିଁ ସମ୍ଭବ ।"

ରାମବାବୁ ଓ ହରିପଣ୍ଡା ଭିତରେ ହୋଇଥିବା କଥୋପକଥନର ବିବରଣୀ ଶୁଣି ସୁବ୍ରତ ବି ଆଶ୍ଚର୍ଯ୍ୟ ହେଲା । ଦୀର୍ଘ ସମୟ ଚୁପ୍ ରହି କହିଲା, "ବାପା ଯାହା କରନ୍ତି, ଭାବିଚିନ୍ତି କରନ୍ତି । ସେ କୌଣସି ଭୁଲ କାମ କରିବାର ମୁଁ ଜାଣି ନାହିଁ ।"

"ଶେଷ ଜୀବନରେ ଗୋଟାଏ ଭୁଲ୍ କରି ସାରା ଜୀବନର ଗୌରବ ନଷ୍ଟ କରିଦେବେ ?" ଲକ୍ଷ୍ମୀ ପଚାରିଲା ।

ସୁବ୍ରତ କିଛି କହିଲା ନାହିଁ । କିନ୍ତୁ ତା' ମନରେ ନାନା ସନ୍ଦେହ ଦେଖା ଦେଲା । ସେ ଭଲ ଭାବରେ ଶୋଇ ପାରିଲା ନାହିଁ । ସକାଳେ ବାପାଙ୍କ ସହ ଅନ୍ୟ ବିଷୟରେ କଥାବାର୍ତ୍ତା କଲା । କିନ୍ତୁ ତାଙ୍କ ଭିତରେ କୌଣସି ପରିବର୍ତ୍ତନର ସୂଚନା ଦେଖି ପାରିଲା ନାହିଁ ।

ଲକ୍ଷ୍ମୀ ସେହିଦିନ ସନ୍ଧରେ ଏ କଥା ତା'ର ପ୍ରିୟ ସଖୀ ସୁମିତାକୁ କହିଲା । ବାସ୍, ପରଦିନ ରାମବାବୁ ଗାଁ ଦାଣ୍ଡରେ ଯାଉଛନ୍ତି, କେତେଜଣ ଯୁବତୀ ନିଜ ନିଜ ଭିତରେ ଧୀର

ହେଲେ ବି ହରି ପଣ୍ଡା ଖୁସି ହେଲେ । କାରଣ କନ୍ୟା ଜୁଟାଇ ଦେଲେ ତାଙ୍କୁ ପୁରସ୍କାର ମିଳିବ । ସେ ନିଜ ବିସ୍ମୟ ସମ୍ଭାଳି ନେଲେ । ତା'ପରେ ହସିଦେଇ କହିଲେ, "ବାବୁ! ମୋ ହାତରେ ହେବନାହିଁ, ସେଭଳି କାମ ଅଛି ? ମୋତେ ଟିକିଏ ସମୟ ଦିଅନ୍ତୁ! ଆପଣଙ୍କର ସୁନାମ ଅଛି । ଆପଣଙ୍କୁ କନ୍ୟା ଦାନ କରି ଖୁସି ହେବା ଭଳି କନ୍ୟାପିତା ବହୁତ ମିଳିବେ !"

ରାମବାବୁ ହରିପଣ୍ଡାଙ୍କ ଏ ମନ୍ତବ୍ୟ ଉପରେ କିଛି କହିଲେ ନାହିଁ । ଖାଲି କହିଲେ, "ଦେଖନ୍ତୁ । ସନ୍ଧାନ ପାଇବା ମାତ୍ରେ ମୋତେ କହିବେ ।"

ଭିତରେ କହୁଥିବାର ଶୁଣିଲେ, "କାହା କପାଳରେ ଏ ଜେଜେ-ବର ଲେଖା ଅଛିରେ ଭଉଣୀ!"

ଦୁଇଦିନ ପରେ ହରିପଣ୍ଡା ଆସି ରାମବାବୁଙ୍କୁ ଆନନ୍ଦରେ ଖବର ଦେଲେ, "ହୋଇଗଲା ଆଜ୍ଞା! କାଶେଶ୍ୱର ଗାଁର ଯଦୁ ଦାସର ଝିଅ। କନ୍ୟା ଦେଖିବେ ଚାଲନ୍ତୁ। କନ୍ୟା ତ ନୁହେଁ, ସାକ୍ଷାତ୍ ଦେବୀ ମୂର୍ତ୍ତି। ଆପଣଙ୍କୁ ଠିକ୍ ମାନିବ।"

ଲକ୍ଷ୍ମୀ ଏକଥା ବି ଶୁଣିଲା। ତା' ମୁହଁ ଶୁଖିଗଲା। ଘର ଭିତରକୁ ଆସି ରାମବାବୁ କହିଲେ, "ମା! ମୁଁ ଟିକିଏ କାଶେଶ୍ୱର ଯାଉଛି, ଗୋଟାଏ ଶୁଭ କାମରେ। ଆସିବାକୁ ଟିକିଏ ଉଛୁର ହୋଇଯିବ।"

ସେ ଗୋଟିଏ ଥଳି ବାହାର କରିନେଇ ଚାଲିଗଲେ।

କାଶେଶ୍ୱର ଘଣ୍ଟାକର ବାଟ। ଯଦୁ ଦାସର ସମସ୍ୟା ବିଷୟରେ ହରିପଣ୍ଡା ବାଟରେ ସବୁ କହିଲେ। ବିଚରା ପାଞ୍ଚ ଝିଅ। ସମ୍ବଳ ବୋଲି କିଛି ନାହିଁ। ବଡ଼ ଝିଅକୁ ଜଣେ ଧନୀ ଲୋକକୁ ବିଭା ଦେଇ କିଛି ପଇସା ପାଇବାର ଆଶା ଅଛି। ସେଥିରେ ଅନ୍ତତଃ ଅନ୍ୟ ଗୋଟିଏ ଯୋଡ଼ିଏ ଝିଅର ବାହାଘର ତୁଲାଇ ପାରିବ।

ରାମବାବୁ ଯଦୁଦାସ ଘରେ ପହଞ୍ଚିବା ମାତ୍ରେ ଯଦୁଦାସ ଓ ତାଙ୍କ ସ୍ତ୍ରୀ ତାଙ୍କୁ ପାଛୋଟି ନେଇ ବସାଇଲେ। ବଡ଼ ଝିଅ ଡକା ହୋଇ ଆସିଲା ଓ କାକୁସ୍ଥ ହୋଇ ଠିଆ ହେଲା।



"ହଉ, ତୁମେ ଯାଅ!" ସମବାବୁ କହିଲେ ।

"ଝିଅଟି ମୋର ରୂପରେ ଯେମିତି, ଗୁଣରେ ସେମିତି । ମୋ ଅବସ୍ଥା ତ ପଣ୍ଡାପୁଅ କହିଥିବେ । ଆପଣ ଯାହା ବୁଝି ବିଚାର କରିବେ!" ଯଦୁଦାସ କହିଲେ ।

"ଆପଣଙ୍କର ପାଞ୍ଚ ଝିଅ ବାହାଘର ପାଇଁ କେତେ ଟଙ୍କା ଖର୍ଚ୍ଚ ହେବ?" ସମବାବୁ ପଚାରିଲେ ।

"ବାବୁ! ଆମେ ଗରିବ । ତଥାପି ପ୍ରତି ବାହାଘର ପାଇଁ ଅନ୍ତତଃ ତିନି ହଜାର ଖର୍ଚ୍ଚ ହେଲେ ପନ୍ଦର ହଜାର ଖର୍ଚ୍ଚ ହେବ ।" ଯଦୁଦାସ କହିଲେ ।

"ଏଇ ନିଅନ୍ତୁ । ଏଥିରେ ଅଛି କୋଡ଼ିଏ ହଜାର ମୂଲ୍ୟର ସୁନା ଗହଣା । ଏହାକୁ ବିକ୍ରି କରି କାମ ତୁଲାଇବେ ।" ସମବାବୁ ଏହା କହି ଥଳିଟି ଯଦୁଦାସଙ୍କ ସ୍ତ୍ରୀଙ୍କୁ ଧରାଇ ଦେଲେ ।

"ତେବେ ଆପଣଙ୍କ ବାହାଘର ତାରିଖ···"

ସମବାବୁ ହସି କହିଲେ, "ଆପଣ କ'ଣ ପାଗଳ? ମୁଁ ବାହା ହେବି କେମିତି? କଥା ହେଲା ଏହିପରି: ମୋ ସ୍ତ୍ରୀ ଆମ ଘରକୁ ବୋହୂ ହୋଇ ଆସିବା ବେଳେ ମୋ ବାପାଙ୍କ ଦାବୀ ମେଣ୍ଟାଇବାକୁ ମୋ ଶ୍ୱଶୁରଙ୍କୁ ବହୁତ କଷ୍ଟ ପାଇବାକୁ ହୋଇଥିଲା । ମୋ ସ୍ତ୍ରୀ ଜୀବନ ସାରା ତାଙ୍କ ବାପାଙ୍କ ସେ ଯାତନା ଭୁଲି ପାରି ନଥିଲେ । ମୃତ୍ୟୁ ପୂର୍ବରୁ ମୋତେ କହିଥିଲେ କି ତାଙ୍କ ଗହଣାତକ ଯେପରି ଜଣେ କନ୍ୟାଦାୟ ଗ୍ରସ୍ତ ଲୋକକୁ ମୁଁ ଦାନ କରିବି । ମୁଁ ଭାବିଲି, ଯେଉଁ ଲୋକ ସତୁରି ବର୍ଷର ବୁଢ଼ାକୁ କନ୍ୟା ଦେବାକୁ ପ୍ରସ୍ତୁତ ଥିବ, ସେ ନିଶ୍ଚୟ ସବୁଠାରୁ କନ୍ୟାଦାୟ ଗ୍ରସ୍ତ । ମୋ ଅନୁମାନ ଠିକ୍ ହେଲା ।"

କୃତଜ୍ଞତାର ଅଶ୍ରୁ ଉଭୟ ଯଦୁବାବୁ ଓ ତାଙ୍କ ସ୍ତ୍ରୀଙ୍କ ଆଖିରୁ ଝରି ଆସିଲା । ସମବାବୁ ବିଦାୟ ନେଲେ ।





# ଉତ୍ତର ରାମାୟଣ

ଦିନେ ମହାରାଜା ରାମଚନ୍ଦ୍ର ଦରବାର କରୁଥା'ନ୍ତି । ଠିକ୍ ସେତିକିବେଳେ ନଅର ବାହାରେ କୁକୁରଟିଏ ଖୁବ୍ ଭୁକିଲା । ଲକ୍ଷ୍ମଣ ଭାବିଲେ "ନିଶ୍ଚୟ ଏହି କୁକୁରର କିଛି କହିବାର ଅଛି ।" ତା'ପରେ ସେ କୁକୁରକୁ ଧରି ଦରବାରରେ ପହଞ୍ଚିଲେ ।

କୁକୁରର ମୁଣ୍ଡ ଫାଟିଥାଏ । ତାକୁ ଶ୍ରୀରାମ ପଚାରିଲେ, "ତୁ ଭୟ ନକରି କହ ତୋତେ ଏ କଷ୍ଟ କିଏ ଦେଇଛି ।"

"ମହାରାଜ, ସର୍ବାର୍ଥସିଦ୍ଧ ନାମକ ଏକ ଭିକ୍ଷୁ ମୋତେ ଏ କଷ୍ଟ ଦେଇଛି ।" କୁକୁର କହିଲା ।

ରାଜା ରାମ ଶିଘ୍ର ଲୋକ ପଠାଇ ଭିକ୍ଷୁକୁ ଧରି ଆଣିଲେ ଓ ପଚାରିଲେ, "ତୁମେ କାହିଁକି ନିରୀହ କୁକୁରକୁ ଏପରି କଷ୍ଟ ଦେଇଛ ?"

ଭିକ୍ଷୁ କହିଲା, "ମହାରାଜ, ମୁଁ ଭିକ୍ଷା ପାଇଁ ଶୀଘ୍ର ବାହାରି ଯିବା ବେଳେ ଏ କୁକୁର ମୋର ପଥରୋଧ କରି ଛିଡ଼ା ହେଲା । ମୁଁ ତାକୁ ତଡ଼ିବାକୁ ବହୁ ଚେଷ୍ଟା କଲି କିନ୍ତୁ ସେ ଜିଦ୍ ଧରି ସେହି ଏକ ସ୍ଥାନରେହିଁ ଠିଆ ହୋଇ ରହିଲା । ମୁଁ ସେତେବେଳେ ନିଜର କ୍ରୋଧ ସମ୍ଭାଳି ନ ପାରି ତାକୁ ମାରିଛି । ତେଣୁ ତା'ର ମୁଣ୍ଡ ଫାଟି ଯାଇଛି । ମୋ ଅପରାଧ ପାଇଁ ଆପଣ ମୋତେ ଯାହା ଦଣ୍ଡ ଆଦେଶ କରିବେ ତାହା ମୋର ଶିରୋଧାର୍ଯ୍ୟ ।"

ରାଜା ରାମ ତାଙ୍କ ଦରବାରର ସଦସ୍ୟମାନଙ୍କୁ ପଚାରିଲେ, "ଏ କ୍ଷେତ୍ରରେ ଭିକ୍ଷୁକୁ କ'ଣ ଦଣ୍ଡ ଦିଆଯିବ ?"



ସମସ୍ତେ ନୀରବ ରହିଲେ । କେହି କିଛି ଉତ୍ତର ନ ଦେବାରୁ କୁକୁରଟି କହିଲା, "ମହାରାଜ, ଏ ଭିକ୍ଷୁକୁ ମୋ କଥା ଅନୁସାରେ ଦଣ୍ଡ ଦିଅନ୍ତୁ । ଏହାକୁ କାଳଞ୍ଜରର ଶାସକ ପଦ ଦିଅନ୍ତୁ ।"

ରାଜା ରାମ ସେହିପରି କଲେ । ଭିକ୍ଷୁକୁ ଶାସକ ପଦ ପ୍ରଦାନ କରି ହାତୀରେ ବସାଇ ସ୍ୱସ୍ଥାନକୁ ପଠାଇ ଦେଲେ । ଭିକ୍ଷୁ ଖୁବ୍ ଖୁସି । ତା'ପରେ ରାମ କୁକୁରକୁ ପଚାରିଲେ "ଏପରି ଦଣ୍ଡର ଅର୍ଥ କ'ଣ ? ଏହା ତ ତା' ପକ୍ଷେ ହେଲା ଆଶିର୍ବାଦ ।"

କୁକୁର କହିଲା, "ମହାରାଜ, ଗତ ଜନ୍ମରେ ମୁଁ ସେହି କାର୍ଯ୍ୟ କରୁଥିଲି । ମୋର ଅନେକ ଦାସଦାସୀ ଧନରତ୍ନରେ ଘର ପୂର୍ଣ୍ଣ ଥିଲା । ମୁଁ ସ୍ୱଭାବରେ ଥିଲି ବିନୟୀ ଓ ଧାର୍ମିକ । ଅତିଥି ସତ୍କାର ଓ ଦେବପୂଜା ଆଦି ନିୟମିତ କରୁଥିଲି । କିନ୍ତୁ କେଉଁଠି କିଛି ସାମାନ୍ୟ ଭୁଲ ଯୋଗୁ ମୋତେ ପୃଥିବୀରେ କୁକୁର ଜନ୍ମ ନେବାକୁ ହୋଇଛି । ଏହି ଉଦ୍ଧତ ଓ ନିଷ୍ଠୁର ଭିକ୍ଷୁ ସେହି ପଦରେ ରହିଲେ ବାରମ୍ବାର ଭୁଲ୍ ଓ ପାପ କରି ବହୁ ଜନ୍ମଧରି ପୃଥିବୀରେ ପଶୁ ଜନ୍ମ ନେଇ କଷ୍ଟ ପାଇବ ।" କୁକୁର ସବୁକଥା ବୁଝାଇ ସାରି ସେଠାରୁ ଚାଲିଗଲା ।

କିଛିଦିନ ପରେ । ଗୋଟିଏ ପେଚା ଓ ଗୋଟିଏ ଚିଲ ବହୁତ ଝଗଡ଼ା କରି ସମାଧାନ ପାଇଁ ଶ୍ରୀରାମଙ୍କ ପାଖକୁ ଆସିଲେ । ସମସ୍ୟାଟି ହେଉଛି ଉଦ୍ୟାନରେ ଥିବା ଗୋଟିଏ ଘରକୁ ଦୁହେଁ ନିଜର ବୋଲି ଦାବୀ କରୁଛନ୍ତି ।

ସେମାନଙ୍କ ସମସ୍ୟାର ସମାଧାନ କରିବା ପାଇଁ ଶ୍ରୀରାମ ମନ୍ତ୍ରୀମାନଙ୍କୁ ସଙ୍ଗରେ ନେଇ ଉଦ୍ୟାନ ଘର ପାଖରେ ପହଞ୍ଚିଲେ ।

"ତୁ ଏ ଘରକୁ କେବେ ନିର୍ମାଣ କଲୁ ?" ଶ୍ରୀରାମ ଚିଲକୁ ପଚାରିଲେ ।

ପୃଥିବୀରେ ପ୍ରଥମେ ଯେତେବେଳେ ମାନବ ପ୍ରାଣୀ ଜନ୍ମ ନେଲେ ସେହି ଦିନଠାରୁ ଏ ଘର ମୋର ହୋଇ ଅଛି ।" ଚିଲ କହିଲା ।

ପେଚା ସଙ୍ଗେ ସଙ୍ଗେ କହି ଉଠିଲା, "ମହାରାଜ, ପୃଥିବୀ ଉପରେ ଯେବେ ବୃକ୍ଷ

ଜନ୍ମିଲା, ସେତେବେଳେ ମୁଁ ଏ ଘର ମୋ ପାଇଁ ବନାଇଥିଲି । ଏ ଘର ମୋର ।"

ତା'ପରେ ଶ୍ରୀରାମ ମନ୍ତ୍ରୀମାନଙ୍କ ସହ ପରାମର୍ଶ କରି କହିଲେ, "ଏ ଘର ପେଚୁର । କାରଣ ପୃଥିବୀ ଉପରେ ସର୍ବପ୍ରଥମେ ବୃକ୍ଷଲତା ଜନ୍ମିଲା । ତା'ପରେ ପ୍ରାଣୀମାନେ ଜନ୍ମିଲେ । ବହୁଦିନ ପରେ ମାନବ ଜନ୍ମ ନେଲା । ଏବେ ପେଚୁର ଘରକୁ ଶାଳ ଠକି ନେବାକୁ ବସିଥିଲା ବୋଲି ତାକୁ କିଛି ଦଣ୍ଡ ଦିଆଯିବ ।"

ଏହି ସମୟରେ ଏକ ଆକାଶବାଣୀ ଏହିପରି ଶୁଣାଗଲା ।

"ହେ ରାମ, ଏହି ଶାଳ ପୂର୍ବରୁହିଁ ଶାପଗ୍ରସ୍ତ । ଏବେ ଆପଣ ତାକୁ ଅଧିକ ଦଣ୍ଡ ଦିଅନ୍ତୁ ନାହିଁ । ବହୁ ପୂର୍ବେ ବ୍ରହ୍ମଦତ୍ତ ନାମରେ ଜଣେ ରାଜା ଥିଲେ । ସେ ଅତ୍ୟନ୍ତ ଧନବାନ୍, ବୀର ଓ ସତ୍ୟବ୍ରତ ଥିଲେ । ଥରେ ସେହି ରାଜାଙ୍କ ଭବନକୁ ଗୌତମ ମୁନି ଆସିଲେ । ରାଜା ଅତି ଭକ୍ତିର ସହିତ ଅତିଥି ସତ୍କାର କରାଇ ତାଙ୍କୁ ନିଜ ଭବନରେ ରଖାଇଲେ । ଭୁଲ୍ ବଶତଃ ହଠାତ୍ ଦିନେ ମୁନିଙ୍କ ଖାଦ୍ୟରେ ମାଂସ ଖଣ୍ଡେ ପଡ଼ିଥିଲା । ଏହା ଦେଖି ମୁନି ଅତ୍ୟନ୍ତ କ୍ରୋଧବଶରେ ରାଜାଙ୍କୁ ଅଭିଶାପ ଦେଲେ କି "ତୁ ଶାଳ ଜନ୍ମ ନେଇ ସବୁବେଳେ ମାଂସାହାର କର ।"

ରାଜା ଦୁଃଖିତ ହୋଇ ଅଭିଶାପକୁ କମ୍ କରିବାକୁ ପ୍ରାର୍ଥନା କରନ୍ତେ ମୁନି କହିଲେ,



"ବହୁବର୍ଷ ପରେ ଇକ୍ଷ୍ୱାକୁ ବଂଶରେ ଭଗବାନ୍ ରାମଚନ୍ଦ୍ର ଜନ୍ମ ନେବେ । ତାଙ୍କ ସ୍ପର୍ଶ ଯୋଗୁ ତୁ ପୁଣି ମାନବ ଜନ୍ମ ଫେରି ପାଇବୁ ।"

ଆକାଶବାଣୀ ଶୁଣିବା ମାତ୍ରେ ଶ୍ରୀରାମ ଶାଳକୁ ସ୍ପର୍ଶ କଲେ । ତତ୍କ୍ଷଣାତ୍ ସେ ତାହାର ଦିବ୍ୟ ରୂପ ଧରି ରାମଙ୍କୁ ପ୍ରଣାମ କରି ଆକାଶ ମାର୍ଗରେ ଅଦୃଶ୍ୟ ହୋଇଗଲା ।

ଥରେ ଯମୁନାତଟ ନିବାସୀ ସାଧୁମାନେ ଏକାଠି ହୋଇ ଶ୍ରୀରାମଙ୍କ ପାଖକୁ ଆସିଲେ । ସେମାନେ ଶ୍ରୀରାମଙ୍କ ପାଇଁ ନଦୀମାନଙ୍କରୁ ପବିତ୍ର ଜଳ ଆଣିଥିଲେ ଓ ବଣରୁ ଅନେକ ଫଳମୂଳ ଆଣିଥିଲେ । ସେମାନେ ନିବେଦନ କଲେ କି ଲବଣ ରାକ୍ଷସ ସେମାନଙ୍କ ଉପରେ ବହୁତ



ଅତ୍ୟାଚାର କରୁଛି, ସେଥିପାଇଁ କିଛି ପ୍ରତିକାର କରାଯାଉ।

ଲବଣାସୁର ଥିଲା ରାକ୍ଷସ ମଧୁର ପୁତ୍ର। ମଧୁ ଭଗବାନ୍ ଶିବଙ୍କୁ ସନ୍ତୁଷ୍ଟ କରି ଏକ ଶକ୍ତିଶାଳୀ ତ୍ରିଶୂଳ ଲାଭ କରିଥାଏ। ଶିବ ତାକୁ ଏହି ବର ଦେଇଥିଲେ କି ତ୍ରିଶୂଳ ତା' ପାଖରେ ଥିବା ପର୍ଯ୍ୟନ୍ତ ତାକୁ କେହି ପରାଜିତ କରିପାରିବେ ନାହିଁ। ମଧୁ ଶିବଙ୍କୁ ପ୍ରାର୍ଥନା କରି କହିଲା, "ପ୍ରଭୁ ଆଜ୍ଞା କରନ୍ତୁ ମୋର ବଂଶଧରମାନେ ମଧ୍ୟ ମୋ ପରେ ଏ ତ୍ରିଶୂଳର ଅଧିକାରୀ ହେବେ।"

କିନ୍ତୁ ଶିବ କହିଲେ, "କେବଳ ତୋର ପୁତ୍ର ଏହାକୁ ବ୍ୟବହାର କରିପାରିବ। ତା'ପରେ ଏହି ତ୍ରିଶୂଳର ଶକ୍ତି ଲୋପ ପାଇଯିବ।"

ମଧୁ ରାବଣର ସଂପର୍କୀୟା ଭଉଣୀ କୁମ୍ଭୀନସର ସ୍ୱାମୀ। ସେମାନଙ୍କ ପୁତ୍ରର ନାମହିଁ ଥିଲା ଲବଣ। ପିଲାଦିନରୁ ସେ ନିଷ୍ଠୁର ଓ ଦୁରାଗ୍ରହୀ ଥିଲା। ମଧୁ ଯେତେ ଚେଷ୍ଟା କଲେ ମଧ୍ୟ ସେ କଦାପି ନିଜର ନିୟନ୍ତ୍ରଣ ଭିତରେ ରହିଲା ନାହିଁ। ଥରେ ମଧୁ ବରୁଣ ଲୋକକୁ ଯାଇଥିଲା। ସେହି ସମୟରେ ରାଜ୍ୟ ରକ୍ଷା କରିବା ପାଇଁ ସେ ତ୍ରିଶୂଳଟି ଲବଣ ହାତରେ ଦେଇଗଲା।

ତ୍ରିଶୂଳର ଅଦ୍ଭୁତ ଶକ୍ତିର ଅଧିକାର ହୋଇ ଲବଣ ଅଧିକ ଉଚ୍ଛୃଙ୍ଖଳ ହୋଇ ଉଠିଲା। ସେ ଋଷିମୁନିମାନଙ୍କୁ କଷ୍ଟ ଦେଲା। ଯାହା ଇଚ୍ଛା ତାହା କଲା। ସେଥିପାଇଁ ଋଷିମୁନିମାନେ ଶ୍ରୀରାମଙ୍କ ପାଖକୁ ଆସିଲେ। ସେମାନଙ୍କର ବିନତି ଶୁଣି ଶ୍ରୀରାମ କହିଲେ, ମୁଁ ଅବଶ୍ୟ ଆପଣମାନଙ୍କୁ ଲବଣାସୁର ରୂପକ ବିପଦରୁ ରକ୍ଷା କରିବି। ଆପଣମାନେ ନିର୍ଭୟ ଓ ନିଶ୍ଚିନ୍ତ ରହନ୍ତୁ।"

ଋଷିମୁନିଙ୍କୁ ଅଭୟ ପ୍ରଦାନ କରି ଶ୍ରୀରାମ ତାଙ୍କ ଅନୁଜଗଣଙ୍କୁ କହିଲେ, "ତୁମ ମଧ୍ୟରୁ ଜଣେ ଯାଇ ଲବଣ ରାକ୍ଷସକୁ ସଂହାର କର। ଭରତ ଯିବାକୁ ଚାହୁଁଥିଲେ। କିନ୍ତୁ ଶତ୍ରୁଘ୍ନ କହିଲେ, "ମୁଁ ସେହି ଅସୁରକୁ ସଂହାର କରିବି। ମୁଁ ସେଥିପାଇଁ ଆଗରୁ ପ୍ରସ୍ତୁତ।"

ଶ୍ରୀରାମ ଶତ୍ରୁଘ୍ନଙ୍କ ଇଚ୍ଛା ସ୍ୱୀକାର କଲେ ଓ ମଧୁପୁରର ରାଜା ଭାବରେ ତାଙ୍କର ଅଭିଷେକ ପାଇଁ ସମସ୍ତ ବ୍ୟବସ୍ଥା କଲେ । ଏପରି ରୀତି ଥିଲା ଯେ କୌଣସି ରାଜ୍ୟର ରାଜାଙ୍କର ମୃତ୍ୟୁ ହେବା ମାତ୍ରେ ଅନ୍ୟ ଜଣେ ରାଜା ଗାଦିରେ ବସିବା ଦରକାର । ଅଭିଷେକ ପରେ ରାମ ଶତ୍ରୁଘ୍ନଙ୍କୁ ଏକ ବାଣ ଦେଇ କହିଲେ, "ବତ୍ସ ଶତ୍ରୁଘ୍ନ, ଏହି ବାଣ ଦ୍ୱାରା ବଡ଼ ବଡ଼ ଦୈତ୍ୟ ସବୁ ସଂହାର ହୋଇଛନ୍ତି । ମୁଁ ରାବଣ ଉପରେ ମଧ୍ୟ ଏହି ବାଣ ପ୍ରୟୋଗ କରିନାହିଁ । ଏବେ ଏହାକୁ ତମେ ଲବଣାସୁରର ବଧ ନିମିତ୍ତ ପ୍ରୟୋଗ କରିବ । କିନ୍ତୁ ଆଉ ଗୋଟିଏ କଥା ମନେରଖ, ଯେଉଁ ତ୍ରିଶୂଳ ସେ ବ୍ୟବହାର କରୁଛି ତାହା ଭଗବାନ ଶିବଙ୍କ ପ୍ରଦତ୍ତ ମହାନ୍ ଶକ୍ତିଶାଳୀ ତ୍ରିଶୂଳ । ତେଣୁ ଯେତେ ସମୟ ତାହା ତା'ର ହାତରେ ଥିବ କେହି ତାକୁ ପରାଜିତ କରିପାରିବ ନାହିଁ । ସେଥିପାଇଁ ଗୋଟିଏ ଉପାୟ କରିବାକୁ ହେବ । ଯେତେବେଳେ ସେ ନଗର ଛାଡ଼ି ବାହାରକୁ ଯାଇଥିବ ସେତେବେଳେ ତମେମାନେ ତା'ର ନଗରକୁ ଘେରି ରହିବ ଓ ସେହିଠାରେ ଯୁଦ୍ଧ କରି ବଧ କରିବ । ମନେରଖ, ଯଦି ସେ ଥରେ ତ୍ରିଶୂଳ ପାଏ ତେବେ ତାକୁ ଜିତିବା ଅସମ୍ଭବ ।"

ତା'ପରେ ଶ୍ରୀରାମ କହିଲେ, "କେବଳ ସେତିକି ନୁହେଁ । ସୈନ୍ୟମାନେ ଆଗରୁ ଯାଇ ଲୁଚି ରହିଥିବେ । ସେ ଯେପରି ନ ଜାଣେ କି



ତା' ସହିତ ଯୁଦ୍ଧ କରିବାକୁ କେହି ଆସୁଛି । ତମେ ପରେ ଯାଇ ସୈନ୍ୟମାନଙ୍କୁ ନେଇ ସୁଯୋଗ ଦେଖି ଅତର୍କିତ ଆକ୍ରମଣ କରି ତାକୁ ବଧ କରିବ ।"

ଶ୍ରୀରାମଙ୍କ କଥା ଅନୁସାରେ କୁମାର ଶତ୍ରୁଘ୍ନ ସମସ୍ତ ପ୍ରକାର ବନ୍ଦୋବସ୍ତ କଲେ । ସୈନ୍ୟମାନେ ଚାଲିଯିବା ପରେ ସେ ଅଳ୍ପ କେତେକ ସୈନ୍ୟ ଧରି ଗଲେ । ବାଟରେ ରାତିରେ ବିଶ୍ରାମ କଲେ ଋଷି ବାଲ୍ମୀକିଙ୍କ ଆଶ୍ରମରେ ।

ବାଲ୍ମୀକି ବହୁତ ଆଦର ଯତ୍ନ ପୂର୍ବକ ଶତ୍ରୁଘ୍ନଙ୍କର ଅତିଥି ସତ୍କାର କରି କହିଲେ, "ବହୁ ପୂର୍ବରୁ ଏହି ଆଶ୍ରମ ଥିଲା ରଘୁବଂଶଙ୍କ



ଅଧିନରେ ।" ଏହିପରି ଗଳ୍ପ କହୁ କହୁ ସେ କହିଲେ, "ପ୍ରାଚୀନ କାଳରେ ତୁମ ରଘୁବଂଶରେ ସୁଦାସ ନାମକ ଜଣେ ରାଜା ଥିଲେ । ତାଙ୍କ ପୁତ୍ରଙ୍କ ନାମ ଥିଲା ବୀରସହ । ସେ ଅଳ୍ପ ବୟସରୁ ଅନେକ ଆଶ୍ଚର୍ଯ୍ୟଜନକ ଓ ସାହସପୂର୍ଣ୍ଣ କାର୍ଯ୍ୟ କରି ଖୁବ ସୁଖ୍ୟାତି ଅର୍ଜନ କରିଥିଲେ । ଦିନେ ସେ ବଣକୁ ଶୀକାର କରିବାକୁ ଯାଇଥା'ନ୍ତି । ଦେଖିଲେ ଦୁଇଟି ରାକ୍ଷସ ଭାଇ ବାଘରୂପ ଧରି ସ୍ୱଚ୍ଛନ୍ଦରେ ବନରେ ବିଚରଣ କରୁଛନ୍ତି । ଅଧିକାଂଶ ପଶୁପକ୍ଷୀଙ୍କୁ ସେମାନେ ଖାଇ ନେଇଥା'ନ୍ତି । ଏସବୁ ଦେଖି ବୀରସହ ରାଗିଯାଇ ଗୋଟିଏ ଅସୁର ବାଘକୁ ମାରିଦେଲେ । ଏ ଘଟଣା ଦେଖି ଅନ୍ୟ ବାଘରୂପୀ ଅସୁର କହିଲା, "ହୁ, ପାପୀ, ନିର୍ଦ୍ଦୋଷରେ କାହିଁକି ମୋ ଭାଇକୁ ମାରିଲୁ ? ମନେରଖ ଏହାର ପ୍ରତିଶୋଧ ମୁଁ ଦିନେ ନା ଦିନେ ନେବି ।"

କିଛିଦିନ ପରେ; ବୀରସହ ରାଜା ହେବା ପରେ ଏହି ଆଶ୍ରମରେ ଏକ ମହାନ୍ ଅଶ୍ୱମେଧ ଯଜ୍ଞ କଲେ । ବଶିଷ୍ଠ ସେ ଯଜ୍ଞରେ ହେଲେ ପୁରୋଧା । ଯଜ୍ଞ ସମାପ୍ତ ହେବା ପରେ ପୂର୍ବୋକ୍ତ ରାକ୍ଷସ ଦିନେ ବଶିଷ୍ଠ ଋଷିଙ୍କ ରୂପ ଧରି ଆସି କହିଲା, "ରାଜନ୍ ଏବେ ଯଜ୍ଞ ସମାପ୍ତ ହେଲା, ମୋତେ ଭଲ ସୁସ୍ୱାଦୁ ମାଂସ ଯୁକ୍ତ ଭୋଜନ କରାଅ ।"

ଗୁରୁଙ୍କର ଆଜ୍ଞା ତତ୍କ୍ଷଣାତ୍ ପାଳନ କରାଗଲା । ସବୁଠାରୁ କୁଶଳୀ ରାନ୍ଧୁଣିଆଁକୁ ରାଜା ଆଦେଶ ଦେଲେ ଭଲ ଭଲ ଖାଦ୍ୟ ତିଆରି କରି ମୁନିଙ୍କୁ ଖୁଆଇବାକୁ । ଇତିମଧ୍ୟରେ ରାକ୍ଷସ ରାନ୍ଧୁଣିଆ ରୂପ ଧରି ରନ୍ଧାରନ୍ଧି କଲା । ରାଜାଙ୍କ ରାଣୀ ମଦୟନ୍ତୀ ନିଜ ହାତରେ ଖାଦ୍ୟ ସବୁ ଋଷି ବଶିଷ୍ଠଙ୍କ ପାଇଁ ପରଷି ଦେଲେ । କିନ୍ତୁ ବଶିଷ୍ଠ ହଠାତ୍ ଖାଦ୍ୟକୁ ଦେଖି ରାଗି ଯାଇ କହିଲେ, "ଏ କ'ଣ ? ମୋତେ ନରମାଂସ ରାନ୍ଧି ଖାଇବାକୁ ଦେଇଛ । ଏହିକ୍ଷଣି ତୁମେ ନରରାକ୍ଷସ ହୋଇଯାଅ ।"

ରାଜା କିଛି ଏ ବିଷୟରେ ଜାଣି ନଥିଲେ । ତେଣୁ ସେ ମଧ୍ୟ କ୍ରୋଧବଶରେ ହାତରେ ପାଣି ଧରି ଋଷିଙ୍କୁ ଶାପ ଦେବାକୁ ବସିଲେ ।

କିନ୍ତୁ ରାଣୀ ତାଙ୍କୁ ସେଥିରୁ ନିବୃତ୍ତ କରାଇ କହିଲେ, "ମହାରାଜ, ମହର୍ଷି ବଶିଷ୍ଠ ଆମ ପାଇଁ ଦେବତାତୁଲ୍ୟ । ଆପଣ ତାଙ୍କୁ ଶାପ ଦେଇ ଧର୍ମର ନାଶ କରନ୍ତୁ ନାହିଁ ।"

ରାଜା ସେଥିରୁ ନିବୃତ୍ତ ହେଲେ ସତ, କିନ୍ତୁ ହାତରେ ଥିବା ମନ୍ତ୍ରପୂତ ଜଳ ତଳେ ପକାଇ ଦେବାରୁ ତାହା ନିଜ ପାଦରେ ପଡ଼ିଲା । ତେଣୁ ସେହି ଦିନଠାରୁ ତାଙ୍କ ନାମ ହେଲା କଲ୍ମଷପାଦ । ଯେତେବେଳେ ବଶିଷ୍ଠ ସବୁକଥା ଜାଣିପାରିଲେ, ସେ ଦୁଃଖିତ ହେଲେ ଓ ଅଭିଶାପକୁ କୋହଳ କରିଦେଇ କହିଲେ, "ଏହି ଅବସ୍ଥାକୁ ରାଜା ମାତ୍ର ବାରବର୍ଷ ପର୍ଯ୍ୟନ୍ତ ଭୋଗିବେ ।" ଶେଷରେ ବାଲ୍ମୀକି କହିଲେ, "ଯେହେତୁ ରଘୁବଂଶୀ ରାଜାମାନେ ଏଠାରେ ଯଜ୍ଞ କରାଇଥିଲେ ତେଣୁ ଏ ଆଶ୍ରମ ତୁମର ବଂଶରହିଁ କୀର୍ତ୍ତି ।"

ସେହିଦିନ ରାତିରେ ସୀତାଙ୍କର ଦୁଇଟି ଯମଜ ପୁତ୍ର ଜନ୍ମ ହେଲେ । ମହର୍ଷି ବାଲ୍ମୀକି ଦୁହିଁଙ୍କର ଜନ୍ମ ସଂସ୍କାର କରି ନାମ ଦେଲେ କୁଶ ଓ ଲବ । ଶତ୍ରୁଘ୍ନ ଏକଥା ଶୁଣି ସୀତାଙ୍କ ପାଖକୁ ଯାଇ ପିଲାଙ୍କୁ ଦେଖି କହିଲେ, "ଦେବୀ, ଏସବୁ ନିୟତିର ଖେଳ ।"

ପରଦିନ ଶତ୍ରୁଘ୍ନ ବାଲ୍ମୀକି ମୁନିଙ୍କଠାରୁ ବିଦାୟ ନେଇ ଲବଣ ବଧ ପାଇଁ ଗଲେ । ଦିନସାରା ରାସ୍ତାରେ ବିତାଇ ସନ୍ଧ୍ୟାରେ ଚ୍ୟବନ ଋଷିଙ୍କ ଆଶ୍ରମରେ ପହଞ୍ଚି ସେଇଠାରେ ସେ ରାତ୍ରି ଯାପନ କଲେ । ଚ୍ୟବନ ଋଷିଙ୍କୁ ଲବଣ ଅସୁରର ତ୍ରିଶୂଳ ବିଷୟରେ ପଚାରିବାରୁ ସେ



ତ୍ରିଶୂଳର ଶକ୍ତି ବିଷୟରେ ଅନେକ ଗଳ୍ପ କହିଲେ । ସେହି ସବୁକଥା କହୁ କହୁ ସେ ଆଉ ଏକ କାହାଣୀ ଶୁଣାଇଲେ ।

ମହାରାଜା ଯୁବନାଶ୍ୱଙ୍କ ପୁତ୍ର ମାନ୍ଧାତା, ଅତ୍ୟନ୍ତ ବଳବାନ୍ ଓ ପରାକ୍ରମୀ ଥିଲେ । ଥରେ ସେ ପୃଥିବୀର ସମସ୍ତ ରାଜାଙ୍କୁ ପରାଜିତ କରିବା ପରେ ସ୍ୱର୍ଗ ଆକ୍ରମଣ କଲେ । ସେଠାରେ ମଧ୍ୟ ଦେବତାମାନଙ୍କୁ ପରାଜିତ କରି ସ୍ୱର୍ଗ ଅଧିକାର କଲେ । ସେଠାରେ ତାଙ୍କର ସର୍ତ୍ତ ଥିଲା ଇନ୍ଦ୍ରପଦରୁ ଅଧେ ନେବେ ଓ ଦେବତାମାନେ ତାଙ୍କର ସେବା କରିବେ । ତାଙ୍କର ଏପରି ସର୍ତ୍ତରେ ଇନ୍ଦ୍ର ବ୍ୟସ୍ତ ହୋଇ ତାଙ୍କୁ ମଧୁର ସ୍ୱରରେ କହିଲେ, "ରାଜନ୍, ପ୍ରଥମେ ଆପଣ ପୃଥିବୀ ଜୟ କରନ୍ତୁ ତା'ପରେ ଆମେ ଆପଣଙ୍କୁ ସ୍ୱର୍ଗ ରାଜ୍ୟ ସମର୍ପଣ କରିବୁ ।"

ମାନ୍ଧାତା କହିଲେ, "ମୁଁ ତ ବହୁ ପୂର୍ବରୁ ପୃଥିବୀ ଜୟ କରି ସାରିଛି ।"

ଇନ୍ଦ୍ର କହିଲେ, "କିନ୍ତୁ ଲବଣ ରାକ୍ଷସ ସହିତ ଯୁଦ୍ଧ କରି ତାକୁ ଜିତିଛନ୍ତି କି ?"

ମାନ୍ଧାତା ଲଜ୍ଜିତ ହୋଇ ପୃଥିବୀକୁ ଫେରି ଆସି ସଙ୍ଗେ ସଙ୍ଗେ ଲବଣ ପାଖକୁ ଦୂତ ପଠାଇଲେ ତାଙ୍କର ଅଧୀନତା ସ୍ୱୀକାର କରିବାକୁ । ଲବଣ ଦୂତକୁ ଖାଇ ପକାଇଲା । ଦୂତ ନ ଫେରିବାରୁ ମାନ୍ଧାତା ଆଶ୍ଚର୍ଯ୍ୟ ହେଲେ । ପରେ ସବୁକଥା ଜାଣି ସେ ସିଧା ଯୁଦ୍ଧ କରିବାକୁ ଗଲେ । ଯୁଦ୍ଧ କ୍ଷେତ୍ରରେ ଲବଣ ଏମାନଙ୍କୁ ଦେଖି ଅଟ୍ଟହାସ କଲା ଓ ଅଳ୍ପକ୍ଷଣ ମଧ୍ୟରେ ନିଜର ଶକ୍ତିଶାଳୀ ତ୍ରିଶୂଳ ପ୍ରୟୋଗ କରି ମାନ୍ଧାତା ଓ ତାଙ୍କ ସୈନ୍ୟସାମନ୍ତଙ୍କୁ ଭସ୍ମ କଲା ।

ତା'ପରେ ଚ୍ୟବନ ଋଷି କହିଲେ, "ଶତ୍ରୁଘ୍ନ, ତୁମେ ଲବଣକୁ ବଧ କରିବ, ଯେତେବେଳେ ତା' ହାତରେ ସେହି ଅଦ୍ଭୁତ ତ୍ରିଶୂଳ ନଥିବ । କାଲିହିଁ ଏହି ମହାନ୍ କାର୍ଯ୍ୟ କରିପାରିବ ।"

ସେଦିନ ରାତିଟି ଆଶ୍ରମରେ ସତ୍ସଙ୍ଗ ମଧ୍ୟରେହିଁ କଟିଲା ।





# କାଠର ତରବାରୀ

ହୁଙ୍ଗେରୀ ଦେଶର ସୈନିକମାନଙ୍କୁ କୁହନ୍ତି ହୁଜାର୍ । ସେ ଦେଶରେ ଏପରି ନିୟମ ଥିଲା ଯେ ଯଦି ଜଣେ ହୁଜାର୍ ପଦରେ ଚାକିରୀ କରେ ତାକୁ ଏକାଦିକ୍ରମେ ବାରବର୍ଷ ସେହି ଚାକିରୀରେ ରହିବାକୁ ପଡ଼ିବ ।

ସେତେବେଳେ ହଙ୍ଗେରୀର ରାଜା ଥା'ନ୍ତି ମାଥ୍ୟୁସ୍ । ସେ ଥିଲେ ପ୍ରଜାବତ୍ସଳ ଓ ଏକ ସୁଶାସକ । ସେ ଲକ୍ଷ୍ୟ କରି ଦେଖିଲେ ତାଙ୍କ ରାଜ୍ୟର ହୁଜାର୍‌ମାନେ ଏତେ କାର୍ଯ୍ୟକ୍ଷମ ନୁହନ୍ତି । ଖବର ନେଇ ବୁଝିଲେ ସେମାନେ ଅଧିକାଂଶ ସମୟ ନିଶାଗ୍ରସ୍ତ ହୋଇ ରହିଥା'ନ୍ତି ।

ସେତେବେଳେ ହୁଜାରମାନଙ୍କୁ ସପ୍ତାହକୁ ଚାରୋଟି ମୁଦ୍ରା ବେତନ ରୂପେ ଦିଆ ଯାଉଥାଏ । ରାଜା ସେନାପତିଙ୍କୁ ମଧ୍ୟ ପଚାରିଲେ ଯେ ଏତେ କମ୍ ବେତନରେ ସେମାନେ କପରି ସବୁବେଳେ ମଦ ପିଉଛନ୍ତି । ସେନାପତି କିଛି ସନ୍ତୋଷଜନକ ଉତ୍ତର ଦେଇ ପାରିଲେ ନାହିଁ । ସେଦିନ ରାତିରେ ସେ ଛଦ୍ମବେଶରେ ଜଣେ ହୁଜାର୍‌ର ପୋଷାକ ପିନ୍ଧି, ପକେଟ୍‌ରେ ଚାରୋଟି ମୁଦ୍ରା ନେଇ ବାହାରିଲେ । ସେ ଦେଖିଲେ ମଦ ଦୋକାନରେ ହୁଜାର୍‌ମାନେ ବସି ମଦ ପିଉଛନ୍ତି, ଥଟ୍ଟା, ତାମସା, ହସ ଖୁସି ପାଟି ଚିତ୍କାର ସବୁ ଚାଲିଛି । ସେ ଦୋକାନ ଭିତରକୁ ପ୍ରବେଶ କଲେ । ଦେଖିଲେ ସେଠାରେ ଚାରିଜଣ ହୁଜାର୍ ଅଛନ୍ତି । ରାଜାଙ୍କୁ ଦେଖି ଜଣେ ନିଶାରେ ଟଳି ଟଳି ଆସି ରାଜାଙ୍କ କାନ ଧରି କହିଲା, "ଆରେ ଟୋକା, ତୁ କେବେ ସୈନ୍ୟଦଳରେ ଆସି ଯୋଗ ଦେଲୁ ?"

"ଏକ ସପ୍ତାହ ହୋଇଗଲାଣି ।" ରାଜା କହିଲେ ।

ଅନ୍ୟ ହୁଜାର୍‌ମାନେ ପାଖକୁ ଆସି ରାଜାଙ୍କ କାନ୍ଧ ଥାପୁଡ଼େଇ କହିଲେ, "ଓ, ତମେ ନୂଆ

ଉଦୟଶଙ୍କର



କି? ଏବେ ବାରବର୍ଷ ପାଇଁ ତୁମେ କଷ୍ଟ ପାଇବ। ତେବେ ତମେ ଚିନ୍ତା ନକରି ମଦ କିଣ, ସମସ୍ତେ ଖାଇ ମଜା କରିବା।"

"ମୋ ପାଖରେ ତ ପଇସା ନାହିଁ! ମୁଁ ବଡ଼ ଗରିବ।" ରାଜା କହିଲେ।

"କିନ୍ତୁ ତମକୁ କାଲି ତ ବେତନ ମିଳିଥିବ। ନହାତ ପକ୍ଷେ ଅନ୍ତତଃ ଗୋଟିଏ ମୁଦ୍ରା ତ ଖର୍ଚ୍ଚ କରିବ ଆମ ପାଇଁ?" ଜଣେ ହୁଜାର୍ କହିଲା।

ଜଣକ ପରେ ଜଣେ ଆସି ମାଗି ମାଗି ରାଜାଙ୍କର ଚାରୋଟି ମୁଦ୍ରା ନେଇ ମଦ ପିଇଦେଲେ। ସେଥିରେ ସନ୍ତୁଷ୍ଟ ନ ହୋଇ ଯୋସ୍କା ନାମକ ଜଣେ ହୁଜାର ଯାଇ ଦୋକାନ ମାଲିକକୁ କହିଲା, "ମୋତେ ଗୋଟିଏ ମୁଦ୍ରା ମୂଲ୍ୟର ମଦ ଧାର୍‌ରେ ଦିଅ।" କିନ୍ତୁ ମାଲିକ ଦେବାକୁ ନାହିଁ କଲା।

ପ୍ରଥମେ ଯୋସ୍କା ମାଲିକକୁ ଗାଳି ଦେଲା ଓ ପରେ ନରମ ହୋଇ କହିଲା, "ତମେ ବିଶ୍ୱାସ ନ କରୁଛ ତ ମୋର ତରବାରିଟି ବନ୍ଧା ରଖି ଦିଅ।" ଦୋକାନ ମାଲିକ ତରବାରିଟି ବନ୍ଧା ରଖି କିଛି ମଦ ଦେଲା ଓ ଦୋକାନ ବନ୍ଦ କରି ଚାଲିଗଲା।

ସେତେବେଳେ ରାତି ବହୁତ ହେଲାଣି। କୌଣସିମତେ ହୁଜାର୍‌ମାନେ ଜାଣିଥିଲେ ଯେ ମଦଦୋକାନ ତଳେ ଏକ ଛୋଟ ଘର ଅଛି। ସେଠାରେ ଖାଦ୍ୟ ଦ୍ରବ୍ୟ ଓ ବଡ଼ ବଡ଼ ମଦ ଭରି ରହିଥିବା ପିମ୍ପା ଅଛି। ସେମାନେ ଠିକ୍ କଲେ ସେଦିନ ସେଠାରୁ କିଛି ଚୋରେଇଲେ ହେବ। କିଛିଦିନ ଆଗରୁ କେତେକ ହୁଜାର୍ ସେଠାରେ ସିନ୍ଧି କରି ପଶିଥିଲେ। ସେହି ସ୍ଥାନଟି ଏବେ ମଧ୍ୟ ଭଲ ଭାବରେ ମରାମତି ହୋଇନାହିଁ। ସେହି ବାଟରେ ଯିବାକୁ ହେବ। ରାଜା ଏଥିରେ ଅସମ୍ମତ ହେବାରୁ ସେମାନେ ରାଜାଙ୍କୁ ମାରିବାକୁ ବାହାରିଲେ। ରାଜା ବାଧ୍ୟ ହୋଇ ତାଙ୍କ କଥା ମାନିଲେ।

ସେମାନଙ୍କ ମଧ୍ୟରୁ ଜଣେ ସିନ୍ଧି ବାଟ ଦେଇ ଭିତରକୁ ଯାଇ କିଛି ଖାଦ୍ୟ ଓ କିଛି ମଦ ଚୋରେଇ ଆଣିଲା। ସମସ୍ତେ ମିଶି ଖାଇଲେ ଓ ବହୁତ ରାତିରେ ଫେରିଲେ। ରାଜା ଭାବିଲେ

ହୁଏତ ପ୍ରହରୀ ତାଙ୍କୁ ବନ୍ଦ କରିବ । କିନ୍ତୁ କେହି କିଛି କହିଲେ ନାହିଁ । ସେମାନେ ଭିତରକୁ ଯାଇ ଶୋଇଲେ । ସେମାନଙ୍କର ନିଦ ହୋଇଯିବା ପରେ ରାଜା ଚୁପ୍‌ଚୁପ୍ ସେ ସ୍ଥାନ ଛାଡ଼ି ଚାଲିଗଲେ ।

ତା' ପରଦିନ ରାଜାଙ୍କ ପାଖରୁ ଆଦେଶ ଆସିଲା କି ଆଜି ହୁଜାର୍‌ମାନେ ଏକତ୍ରିତ ହେବେ ରାଜାପ୍ରାସାଦ ନିକଟରେ । ସମସ୍ତେ ସମ୍ପୂର୍ଣ୍ଣ ପୋଷାକ ଓ ଅସ୍ତ୍ର ନେଇ ଆସିବେ । ରାଜା ସେମାନଙ୍କୁ ଦେଖିବାକୁ ଚାହାନ୍ତି । ସମସ୍ତେ ବେଶ ପୋଷାକ ଓ ତରବାରି ସବୁ ଖୋଜି ବ୍ୟସ୍ତ ହୋଇ ଶିଘ୍ର କାମ ସାରି ରାଜାଙ୍କ ନିକଟକୁ ଯିବାକୁ ପ୍ରସ୍ତୁତ ହେଲେ । କିନ୍ତୁ ଯୋଦ୍ଧା ପାଖରେ ତ ତରବାରି ନଥାଏ । କ'ଣ କରିବ ? ସମସ୍ତଙ୍କୁ ମାଗିଲା, କିନ୍ତୁ କାହାରି ପାଖରେ ଅଧିକା ତରବାରି ନ ଥାଏ । ସେ ତରବର ହୋଇ ଜଣେ ବଢ଼େଇ ପାଖକୁ ଯାଇ କାଠର ତରବାରିଟିଏ ବନାଇ ନେଇ ଆସିଲା । ସେଇଟିକୁ ଖୋଳରେ ପୂରାଇ ଅଣ୍ଟାରେ ଝୁଲାଇ ଅନ୍ୟମାନଙ୍କ ସହିତ ଗଲା ।

ରାଜା ପୂର୍ବଦିନ ରାତରେ ଦେଖିଥିବା ଚାରିଜଣ ହୁଜାର୍‌ଙ୍କୁ ଚିହ୍ନି ନେଲେ ଓ ଯୋଦ୍ଧା ଆଡ଼େ ବେଶି ଚାହୁଁଥା'ନ୍ତି ।

ସେହି ସମୟରେ ଅନ୍ୟ ଜଣେ ହୁଜାର୍ କାରାଗାରରେ ବନ୍ଦୀ ଥିଲା । ସେ ଏକ ଭୀଷଣ ଅପରାଧ କରିଥିବା ଯୋଗୁ ତା'ର ମୃତ୍ୟୁ ଦଣ୍ଡ ଘୋଷଣା କରା ଯାଇଥିଲା । ସେ ଫାଶୀ ଅପେକ୍ଷାରେ ଥାଏ । ରାଜା ସେହି ବନ୍ଦୀକୁ



ସେଠାରେ ଉପସ୍ଥିତ କରିବାକୁ ଆଦେଶ ଦେଲେ । ରାଜସେବକମାନେ ତତ୍‌କ୍ଷଣାତ୍ ରାଜାଜ୍ଞା ପାଳନ କଲେ ।

ରାଜା ସଙ୍ଗେ ସଙ୍ଗେ ସେହି ବନ୍ଦୀର ମୁଣ୍ଡକାଟ କରିବାକୁ ଯୋଦ୍ଧାକୁ କହିଲେ । ରାଜାଙ୍କ ଆଦେଶ ଶୁଣି ସେ ଭୟରେ କମ୍ପିଲା । ସେ କିପରି ବା କାଠର ତରବାରିରେ ମୁଣ୍ଡ କାଟିବ ? ଟିକିଏ ନୀରବ ରହି ସେ କହିଲା, "ମହାରାଜ, ଯୁଦ୍ଧ ବ୍ୟତୀତ ଅନ୍ୟ କୌଣସି କ୍ଷେତ୍ରରେ ରକ୍ତପାତ କରିବା ମୋର ଧର୍ମର ବିରୁଦ୍ଧ । ଆପଣଙ୍କ କଥା ନ ମାନିବା ଯୋଗୁ ଦଣ୍ଡ ସ୍ୱରୂପ ଅଧିକ ଚାରିବର୍ଷ ହୁଜାର୍ ହୋଇ ଖଟିବି । କିନ୍ତୁ ଏହି ହୁଜାର୍‌ର ମୁଣ୍ଡ କାଟିବାର ଆଦେଶ ଦିଅନ୍ତୁ ନାହିଁ ।"

ରାଜା ରାଗିଯାଇ କହିଲେ, "କ'ଣ, ତମେ ମୋ ଆଦେଶ ଅମାନ୍ୟ କରିବ ?"

ଯୋଦ୍ଧା କହିଲା, "ମହାରାଜ, ଆପଣଙ୍କ ଆଦେଶ ଯଦି ପାଳନ କରିବି ତେବେ ତା' ପୂର୍ବରୁ କିଛି ସମୟ ପାଇଁ ଭଗବାନଙ୍କୁ ପ୍ରାର୍ଥନା କରିବି ।"

ରାଜା ପ୍ରାର୍ଥନା କରିବା ପାଇଁ ତାକୁ ଅନୁମତି ଦେଲେ । ଯୋଦ୍ଧା ଗଭୀର ନିଶ୍ୱାସ ନେଇ ବିକଳ ହୋଇ ଆକାଶ ଆଡ଼କୁ ଚାହିଁ ହାତ ଯୋଡ଼ି କହିଲା, "ହେ ଭଗବାନ୍, ଏହି ବିଚାରା ହୁଜାର୍ ଉପରେ ଦୟା କର । ମୁଁ ଏହାର ପ୍ରାଣ ନେବାକୁ ଚାହୁଁନାହିଁ । ତେଣୁ ପ୍ରଭୁ ଦୟାକରି ମୋର ଲୁହା ତରବାରିକୁ କାଠ ତରବାରି କରିଦିଅ ।"

ଏତିକି କହି ସେ ଖୋଳରୁ କାଠ ତରବାରି ବାହାର କରି ରାଜାଙ୍କୁ କହିଲା, "ଦେଖନ୍ତୁ ମହାରାଜ, ଭଗବାନ୍ ମୋର ପ୍ରାର୍ଥନା ଶୁଣିଲେ ।"

ରାଜାଙ୍କୁ ହସ ଲାଗିଲା । ସେ ମନେ ମନେ ଯୋଦ୍ଧାର ବୁଦ୍ଧିକୁ ଖୁବ୍ ପ୍ରଶଂସା କଲେ ଓ ଦଣ୍ଡ ଦେବାକଥା ଭୁଲି ଯାଇ ସମସ୍ତଙ୍କୁ କ୍ଷମା ଦେଲେ । ଅବଶ୍ୟ ପରେ ରାଜା ଜଣେ ହୁଜାର୍‌ର କର୍ତ୍ତବ୍ୟ ବିଷୟରେ ସେମାନଙ୍କୁ ବୁଝାଇ ଦେଲେ ।





# ଜାମାତା ନିର୍ବାଚନ

[ ୫ ]

ଗ୍ରାମବାସୀମାନଙ୍କୁ ଦୁଇ ମୁଖିଆ ବୁଝାଇଦେଲେ ଯେ ରାଜଦୀପ ଜଣେ ତାନ୍ତ୍ରିକ । ତେଣୁ ସେ ଯାହା ଉପକାର କରେ ତାହା ମଧ୍ୟ ଅନିଷ୍ଟକାରକ । ସେହି ସମୟରେ ଗୋଟିଏ ଘଟଣା ଘଟିଲା । ଶ୍ରୀନିବାସର ସ୍ତ୍ରୀ ତା'ର ଗହଣା ଗୁଡିକ ବାନ୍ଧି ଗୋଟିଏ ପୁଟୁଳି କରି ରଖି ଦେଇ ଗାଧୋଇଗଲା । ଫେରି ଦେଖେ ତ ତାକୁ କିଏ ନେଇ ଯାଇଛି । ବିଚାରୀ କାନ୍ଦକାଟି ଅସ୍ଥିର । ଏ ଖବର ରାଜଦୀପ ପାଇବା ମାତ୍ରେ ତାଙ୍କ ଘରକୁ ଯାଇ ଚାରିଆଡ଼ ବୁଲି ଦେଖିଲା । ବୁଲି ବୁଲି ଏକ ସଦ୍ୟ ଖୋଳା ହୋଇଥିବା ଗାତ ଘର ଗୋଟିଏ କୋଣରେ ଦେଖିବାକୁ ପାଇଲା । ସେ ଶ୍ରୀନିବାସକୁ କହିଲା ତାକୁ ଖୋଳିବାକୁ । ଖୋଳିବାରୁ ଦେଖାଗଲା ସେଇଠାରେହିଁ ଗହଣା ପୁଟୁଳିଟି ପୋତା ହୋଇଛି ।

ରାଜଦୀପ ଏହି ହିତକାର୍ଯ୍ୟ କରିଥିବାରୁ ତାକୁ କୋଡ଼ିଏ ପାହାର ପିଟିବା ଦରକାର । କିନ୍ତୁ ଶ୍ରୀନିବାସ ସେପରି କଲା ନାହିଁ । କାରଣ ସେ ଦେଖିବାକୁ ଚାହୁଁଥିଲା ରାଜଦୀପକୁ ନ ବାଡ଼େଇଲେ ଫଳ କ'ଣ ହେବ । ପୁଣି ରାଜଦୀପକୁ ସେ ଅତ୍ୟନ୍ତ ଭଲ ପାଉଥିଲା ।

ଏକଥା ମୁଖିଆ ଦୁହେଁ ଶୁଣିଲେ । ରାତିରେ ଦୁଇ ମୁଖିଆ ଶ୍ରୀନିବାସର ଧାନ କ୍ଷେତକୁ ଲୁଚି ଲୁଚି ଯାଇ ଗୋଟିଏ ଧାନଗଦାରେ ନିଆଁ ଲଗାଇ ଦେଲେ । ସକାଳୁ ଶ୍ରୀନିବାସ ଯାଇ ଦୁଇ ମୁଖିଆଙ୍କୁ ଏ ସମ୍ବାଦ ଦେଲା । ସେମାନେ ସବୁ ଶୁଣି କହିଲେ, "ଶ୍ରୀନିବାସ, ତମେ ଆମ କଥାକୁ କୌଣସି ମୂଲ୍ୟ ଦେଲ ନାହିଁ । ତାହାର ଫଳ ଭଗବାନ ତୁମକୁ ଦେଲେ । ଯଦି ତୁମେ ଅଳଙ୍କାର ପାଇବା ପରେ ରାଜଦୀପକୁ କୋଡ଼ିଏ



ଯାହାର ପିଟିଥା'ନ୍ତି ତେବେ ଏ ଦଶା ଭୋଗ କରି ନଥା'ନ୍ତି ।"

ଏକଥା ସାରା ଗ୍ରାମରେ ସମସ୍ତେ ଜାଣିଲେ । ସେମାନେ ଦୁଇ ମୁଖିଆଙ୍କ ପାଖରେ ପହଞ୍ଚି କହିଲେ, "ମହାଶୟ, ଆମେ ଯଦି ଶ୍ରୀନିବାସ ପରି କୌଣସି ଭୁଲ କରିଥାଉଁ ତେବେ ଆମକୁ କ୍ଷମା କରିବେ । ଯାହା ଆପଣମାନେ କହିବେ ତାହା ଆମର ଶିରୋଧାର୍ଯ୍ୟ ।"

ଏସବୁ ଘଟଣା ଶୁଣି ରାଜଦୀପ ଦୁଇ ମୁଖିଆଙ୍କ ପାଖରେ ପହଞ୍ଚି କହିଲା, "ମହାଶୟ, ଆପଣମାନେ କାହିଁକି ଏପରି ଅନ୍ୟାୟ କରୁଛନ୍ତି ? ମୁଁ ଭଲ ଭାବରେ ଜାଣିଛି ଯେ ଆପଣ ଦୁହେଁ ରାତିରେ ଯାଇ ଶ୍ରୀନିବାସର ଧାନ ପୋଡ଼ି ପକାଇଛନ୍ତି । ଆପଣ ଶୀଘ୍ର ଶ୍ରୀନିବାସର କ୍ଷତି ପୂରଣ କରନ୍ତୁ, ନଚେତ୍ ଆପଣଙ୍କୁ ଦୁଇଗୁଣ କ୍ଷତି ସହିବାକୁ ପଡ଼ିବ ।"

"କ'ଣ, ତମେ ଆମକୁ ଧମକ ଦେବାକୁ ଆସିଛ ? କୁହ ତେବେ ଆମର କ'ଣ କ୍ଷତି ତମେ କରିବ ?" ଜଣେ ମୁଖିଆ କହିଲେ ।

"ଆଜି ରାତିରେ ଆପଣଙ୍କ ଘରେ ଥିବା ଗୋଟିଏ ଧାନବସ୍ତା ପୋଡ଼ିଯିବ । ତଥାପି ଯଦି ଆପଣମାନେ ନ ବୁଝନ୍ତି ତେବେ କାଲିଠାରୁ ସବୁଦିନେ ଗୋଟିଏ ଗୋଟିଏ ଧାନବସ୍ତା ପୋଡ଼ିବ ।" ରାଜଦୀପ କହିଲା ।

ସେଦିନ ରାତିରେହିଁ ସେମାନଙ୍କ ଘର ମଝିରେ ଥିବା ଧାନବସ୍ତାଗୁଡ଼ିକ ମଧ୍ୟରୁ ଗୋଟିଏ ସମ୍ପୂର୍ଣ୍ଣ ଜଳି ଯାଇଛି । ଆଶ୍ଚର୍ଯ୍ୟର କଥା ଏହି ଯେ ନିଆଁ କେହି ଦେଖି ନାହାନ୍ତି ପୁଣି ଅନ୍ୟ ସବୁ ବସ୍ତା ଭଲ ଅବସ୍ଥାରେ ଅଛି । ଏସବୁ ଦେଖି ଦୁଇ ମୁଖିଆ ମନରେ ଟିକିଏ ଡରିଗଲେ କିନ୍ତୁ ବାହାରେ ବହୁତ ରାଗ ଦେଖାଇ ରାଜଦୀପକୁ ଡାକି ପଚାରିଲେ, "ସତ ସତ କହିଦିଅ ତ ତମେ କିଏ ?"

"ମୁଁ ଯିଏ ବି ହେଲେ ଆପଣମାନଙ୍କର ସେଥିରେ ଯାଏ ଆସେ କ'ଣ ? ମୁଁ କାହାର କ୍ଷତି କରୁନାହିଁ । ଆପଣ ଦୁହେଁ ଏହି ଗାଁରେ ନିଜର ପ୍ରଭୁତ୍ୱ ବଜାୟ ରଖିବାକୁ ଚାହାନ୍ତି ବୋଲି ଆପଣଙ୍କ ମଧ୍ୟରେ ବିବେକବୋଧ ବୋଲି କିଛି ନାହିଁ ?" ରାଜଦୀପ କହିଲା ।

"ଠିକ୍ ଅଛି । ତେବେ ଆମେ କ'ଣ କରିବୁ ଆମକୁ ଏହାକ୍ଷଣି କୁହ ।" ଜଣେ ମୁଖିଆ ପଚାରିଲେ ।

"ଏବେ ଆପଣ ଯାଇ ଶ୍ରୀନିବାସକୁ କୁହନ୍ତୁ ଯେ ସେ ମୋତେ କୋଡ଼ିଏ ପାହାର ମାରୁ । ଏହାର ଫଳ ସ୍ୱରୂପ ସଭରେ ଗୁପ୍ତରେ ଆପଣମାନେ ଯାଇ ତା'ର କ୍ଷତି ହୋଇଥିବା ଧାନତକ ପୂରଣ କରିଦେବେ । ବାସ୍ ଆପଣଙ୍କ ମୁଖିଆ ପଦ ବି ରହିବ । ବିଚାରା ଶ୍ରୀନିବାସ ମଧ୍ୟ ତା'ର କ୍ଷତି ହୋଇଥିବା ଜିନିଷ ପାଇବ । ଆଜି ମୋର ମାଡ଼ ଖାଇବାରେ କିଛି ଆପତ୍ତି ନାହିଁ । ମୁଁ ସହିଯିବି । କିନ୍ତୁ ଗ୍ରାମବାସୀମାନେ ଭଲ ରୁହନ୍ତୁ ।" ରାଜଦୀପ ଏପରି ପ୍ରସ୍ତାବ ଦେଲା ।

ମୁଖିଆମାନେ ସେ କଥା ମାନିଗଲେ । ଶ୍ରୀନିବାସ ରାଜଦୀପକୁ କୋଡ଼ିଏ ପାହାର ପିଟିଲା । ବାସ୍ ତା' ପରଦିନ ସେ ତା'ର ଧାନ ପାଇଗଲା । ସାରା ଗ୍ରାମରେ ଏକଥା ଶୃଙ୍ଖଳା ସୃଷ୍ଟି କଲା । ଯାହା ବି ହେଉ ମୁଖିଆ ଦୁହେଁ ନିଜ ନିଜର ସମ୍ମାନ ଫେରି ପାଇଲେ ।

ଆରମ୍ଭରୁ କିନ୍ତୁ ଜୟ ବିଜୟ ନିଜ ନିଜ ବାପାଙ୍କ କଥା ମାନି ରାଜଦୀପଠାରୁ ଦୂରରେ ରହୁଥିଲେ । ସେମାନେ ଜାଣିଥିଲେ ଯେ ରାଜଦୀପ ମହା ଚାଲାକ ଓ କିଛି ଟିକିଏ ଅସାବଧାନ ହୋଇଗଲେ ସେମାନେ ମହା ବିପଦରେ ପଡ଼ିବେ ।



ଦିନେ ଏକ ବିଚିତ୍ର ଘଟଣା ଘଟିଲା । ଜୟ ଓ ବିଜୟ ନଦୀରୁ ପାଣି ନେଉଥିବା ଗ୍ରାମର ଝିଅ କମଳ ସହିତ ବହୁତ ଅସଦ୍ ବ୍ୟବହାର କଲେ । ସେମାନେ ତା'ଠାରୁ ମାଠିଆ ଛଡ଼ାଇ ନେଇ କହିଲେ, "ଏ କମଳ, ଏ ଆମ୍ବଗଛ ଉପରକୁ ଉଠି ଯା ଆଉ ଗୁରେଠା ଆମ୍ବ ତୋଳି ଆମକୁ ଦେ । ନହେଲେ ତୋ ମାଠିଆ ନଈକୁ ଫିଙ୍ଗି ଦେବୁ ।"

କମଳ ଭୟଭୀତ ହୋଇ ଠିଆ ହୋଇଥାଏ । ଠିକ୍ ସେତିକିବେଳେ ସେଠାରେ ପହଞ୍ଚିଲା ରାଜଦୀପ । ସେ କମଳ ମୁହଁରୁ ସବୁକଥା ଶୁଣି କହିଲା, "ତମର ଆମ୍ବ ଦରକାର ତ ମୁଁ ତୋଳି ଦେବି । ତୁମେ କମଳକୁ ତା' ମାଠିଆଟି ଫେରାଇ ଦିଅ ।



"ପ୍ରଥମେ ଆମ୍ବ ଦିଅ, ତେବେ ଯାଇ ଆମେ ମାଠିଆ ଫେରାଇବୁ ।" ଜୟ ବିଜୟ କହିଲେ ।

ପ୍ରକୃତରେ ସେତେବେଳେ ଆମ୍ବର ସମୟ ନଥିଲା । ଗଛରେ ଗୋଟିଏ ବି ଫଳ ନଥିଲା । କିନ୍ତୁ ରାଜଦୀପ ଗମ୍ଭୀର ହୋଇ ଗଛ ଉପରକୁ ଉଠିଗଲା ଓ କିଛି ସମୟ ପରେ ଆଠଟି ପାଚିଲା ଆମ୍ବ ଧରି ଆସି ସେଗୁଡ଼ିକ ଜୟ ବିଜୟଙ୍କୁ ଦେଲା ।

ଏ ଘଟଣା ଦେଖି ଜୟ ବିଜୟଙ୍କ ମଥା ଘୂରାଇଗଲା । ସେମାନେ ପଚାରିଲେ, "ଏ ହେମନ୍ତ ଋତୁରେ ଆମ୍ବ ତମେ କେଉଁଠୁ ପାଇଲ ? ଗଛରେ ତ ଗୋଟିଏ ଆମ୍ବ ନାହିଁ । ତମେ ସୁନ୍ଦର ସୁନ୍ଦର ପାଚିଲା ଆମ୍ବ ସବୁ କେଉଁଠୁ ଆଣିଲ ?"

ରାଜଦୀପ କହିଲା, "ଦେଖ, ଯଦି କୌଣସି ବ୍ୟକ୍ତି ସ୍ୱାର୍ଥ ନ ଥାଇ କାହାର ସହାୟତା କରେ ତେବେ ସେ କୌଣସି ଗଛକୁ ମାଗିଲେ ସେ ଫଳ ଦେବ, ଆଉ ସେ କୌଣସି ପାହାଡ଼କୁ ମାଗିଲେ ସେ ଧନରତ୍ନ ଦେବ ।"

"ତେବେ ତ ଆମ ପାଇଁ କିଛି ଧନରତ୍ନ କୌଣସି ପାହାଡ଼ରୁ ମାଗି ନେଇ ଆସ ।" ବିଜୟ କହିଲା ।

"ଦେଖ, ମୁଁ ତମକୁ ଫଳ ଦେଲି ସେଇ ଯଥେଷ୍ଟ । ରତ୍ନ ମୁଁ ଦେବି ନାହିଁ । ପ୍ରଥମେ କମଳାକୁ ତା'ର ମାଠିଆଟି ଫେରାଇ ଦିଅ ସେ ଘରକୁ ଯାଉ ।" ରାଜଦୀପ କହିଲା ।

ଜୟ ବିଜୟ କିଛି ନ ଶୁଣି ଧନରତ୍ନ ପାଇବା ପାଇଁ ଜିଦ୍ କଲେ । ରାଜଦୀପ କମଳାକୁ କହିଲା, "ଭଉଣୀ, ତୁମେ ତୁମର ମାଠିଆ ଏମାନଙ୍କଠାରୁ ନେଇ ଘରକୁ ଯାଅ ଏମାନେ ତମର କିଛି କରିପାରିବେ ନାହିଁ ।"

କମଳା ମାଠିଆଟି ଧରି ଘରକୁ ଗଲା । ଜୟ ବିଜୟ ତାକୁ ଧରିବାକୁ ଚାହିଁଲେ । କିନ୍ତୁ ସେମାନଙ୍କ ହାତପାଦ ବନ୍ଧା ହୋଇଥିଲାପରି ଲାଗିଲା । କମଳା ଅଦୃଶ୍ୟ ହୋଇଯିବା ପରେ ପୁଣି ହାତପାଦ ଚଳିବାକୁ ଲାଗିଲା ।

"ତମେ କ'ଣ ଜଣେ ତାନ୍ତ୍ରିକ ?" ଜୟ ବିଜୟ ପଚାରିଲେ ।

"ମୋର ମନ୍ତ୍ର ତନ୍ତ୍ର ହେଉଛି ଉତ୍ତମ ବ୍ୟବହାର ।" ରାଜଦୀପ କହିଲା ।

"ଆମେ ମଜା କରୁଥିଲୁ । ତମେ ସେଥିରେ ବାଧା ଦେବା କ'ଣ ଉତ୍ତମ ବ୍ୟବହାରର ଲକ୍ଷଣ ?" ଜୟ ବିଜୟ କହିଲେ ।

"ତମେ ମଜା କରିବ ଅନ୍ୟର ଅନିଷ୍ଟ କରି ? ଅନ୍ୟକୁ କଷ୍ଟ ଦେଇ ? ସେପରି ଭବିଷ୍ୟତରେ କେବେ ମଧ୍ୟ କରିବାକୁ ଚେଷ୍ଟା କରିବ ତ ତୁମର ହାତ ପାଦ ଚଳିବ ନାହିଁ । ମନେ ରହିଲା ?" ଏହି ଚେତାବନୀ ଦେଇ ରାଜଦୀପ ଚାଲିଗଲା ।

ତା'ପରେ ସେମାନେ ଅନେକଥର କିଛି ଦୁଷ୍ଟାମୀ କରିବାକୁ ଚେଷ୍ଟା କଲେ ତାଙ୍କର ହାତ ପାଦ ଅଚଳ ହୋଇଯାଏ । ତେଣୁ ସେମାନେ ଗ୍ରାମବାସୀଙ୍କୁ ଆଉ କଷ୍ଟ ଦେଇ ପାରିଲେ ନାହିଁ । ପରେ ସେମାନେ ବାପାମାନଙ୍କୁ କହିଲେ ଯେ ରାଜଦୀପ ସେମାନଙ୍କ ସ୍ୱାଧୀନତାରେ ବାଧା ଦେଉଛି । ମୁଖିଆମାନେ ମଧ୍ୟ ମନେ ମନେ ଖୁସି ହେଲେ ଯେ ରାଜଦୀପ ଏପରି ବନ୍ଦ କରିବା ଦ୍ୱାରା ପୁଅ ଦୁହେଁ କ୍ରମେ ଦୁଷ୍ଟ ପ୍ରକୃତି ଛାଡ଼ି ଦେଉଛନ୍ତି । ତେଣୁ ସେମାନେ ତାଙ୍କ କଥା ଉପରେ କୌଣସି ଗୁରୁତ୍ୱ ଦେଲେ ନାହିଁ ।

ତା'ପରେ ଜୟ ବିଜୟ ରାଜଦୀପକୁ ଈର୍ଷ୍ୟା କଲେ ଓ ରାଗିଲେ । ଦିନେ ସେମାନେ ରାଜଦୀପକୁ ଶୋଇବା ଅବସ୍ଥାରେ ବାନ୍ଧି ନଈରେ ଫିଙ୍ଗି ଦେବାକୁ ମନସ୍ଥ କଲେ । ସେମାନେ ଦଉଡ଼ି ଧରି ସେଠାରେ ପହଞ୍ଚିବା ମାତ୍ରେ ଦଉଡି ତାଙ୍କ ଦେହରେ ଗୁଡ଼ାଇ ହୋଇଗଲା ଓ ସେମାନେ ଚିତ୍କାର କଲେ । ଚିତ୍କାର ଶୁଣି ରାଜଦୀପ ଉଠି ପଡ଼ିଲା ଓ ସେମାନଙ୍କ ବନ୍ଧନ ଖୋଲିଦେଇ କହିଲା, "ମୋତେ ଠକି କରି ଏପରି କଷ୍ଟ ଦେବାକୁ ଯେ ଯିବେ ସେ ହିଁ କଷ୍ଟରେ ପଡ଼େ । ମୁଁ ନିଜେ ନ ଚାହିଲେ ମୋତେ କେହି କଷ୍ଟଦେଇ ପାରିବ ନାହିଁ ।"

ଜୟ ବିଜୟଙ୍କ ମୁହଁ ଲଜ୍ଜା ଓ ରାଗରେ କଳା ପଡିଗଲା । ସେମାନେ ମୁହଁ ତଳକୁ କରି ଚାଲିଗଲେ ସିନା, ଭାବୁଥା'ନ୍ତି କିପରି ରାଜଦୀପକୁ ସେମାନେ ମାରି ଶେଷ କରିଦେବେ । (କ୍ରମଶଃ)





# ପଞ୍ଚାଙ୍ଗ ଶାସ୍ତ୍ରୀ

ଗୋଟିଏ ଜଙ୍ଗଲରେ ସାତଜଣ ଡାକୁ ରହୁଥା'ନ୍ତି । ଥରେ ସେମାନେ ଚୋରି କରିବାକୁ ଯିବାବେଳେ ପଞ୍ଚାଙ୍ଗ ଶାସ୍ତ୍ରୀଙ୍କ ସହ ରାସ୍ତାରେ ଦେଖାହେଲା । ବ୍ରାହ୍ମଣ ପଞ୍ଚାଙ୍ଗ ଶାସ୍ତ୍ରୀ ଦେଖିବାକୁ ମଧ୍ୟବୟସ୍କ, ମୁଣ୍ଡ ଲଣ୍ଡା ପଛକୁ ଚୁଟିଟିଏ ପଡ଼ିଛି, ହାତରେ ଲୋଟା ଅନ୍ୟ ହାତରେ ପଞ୍ଚାଙ୍ଗ ଶାସ୍ତ୍ରର ପୋଥି । ଶାସ୍ତ୍ରୀଜୀଙ୍କର ଏପରି ରୂପ ଦେଖି ଡାକୁଦଳ ହସି ପକାଇଲେ ।

ଶାସ୍ତ୍ରୀଜୀ ସେମାନଙ୍କୁ ଦେଖିବା ମାତ୍ରେ ବୁଝିଗଲେ ଏମାନେ ଡାକୁଦଳ । ମନରେ ତାଙ୍କର ଭୟ ହେଲା । ଏମାନେ ଯଦି ପଇସା ପାଇଁ ତାଙ୍କୁ କଷ୍ଟ ଦିଅନ୍ତି; ସେ କ'ଣ କରିବେ ? ଏପରି ବିପଦରେ ତାଙ୍କୁ ଗୋଟାଏ ବୁଦ୍ଧି ଦିଶିଲା । ସେ ଡାକୁଦଳକୁ ଡାକି କହିଲେ, "ଭାଇମାନେ, ମୋ ପାଖକୁ ଆସ । ତମେ ସବୁ ଯେଉଁ ଉଦ୍ଦେଶ୍ୟରେ ବାହାରିଛ ମୁଁ ସବୁ ଜାଣେ । କିନ୍ତୁ ଗୋଟିଏ କଥା । ଯଦି ଭଲ ମୁହୂର୍ତ୍ତ ଦେଖି ଯିବ ତେବେ କାର୍ଯ୍ୟ ସିଦ୍ଧି ହେବ, ନହେଲେ ବିପଦ ପଡ଼ିପାରେ । ଆଉ କାର୍ଯ୍ୟ ସିଦ୍ଧି ହେଲେ ତ ଆରାମରେ ଘରେ ବସି ଖାଇବ ।"

ଶାସ୍ତ୍ରୀଙ୍କ କଥା ଶୁଣି ଡାକୁମାନେ ଖୁସି ହୋଇଗଲେ ଜଣେ କହିଲା, "ମହାଶୟ, ଆମେ ଆପଣଙ୍କ କଥା ଅନୁସାରେ କାର୍ଯ୍ୟ କରିବୁ । ଏବେ ଶାସ୍ତ୍ର ଦେଖି ଆମ ପାଇଁ ଶୁଭ ମୁହୂର୍ତ୍ତ ଠିକ୍ କରନ୍ତୁ ।"

ସେହିଦିନଠାରୁ ଶାସ୍ତ୍ରୀଜୀ ଶାସ୍ତ୍ର ପଢ଼ି ଶୁଭ ମୁହୂର୍ତ୍ତ ଠିକ୍ କରନ୍ତି ଓ ଡାକୁମାନେ ଯାଇ ଚୋରି, ଡକାୟତି, କରନ୍ତି । ତଦ୍ୱାରା ସେମାନେ ବହୁତ ଧନ ଅର୍ଜ୍ଜନ କରନ୍ତି ଓ କେବେ ମଧ୍ୟ ଧରା ପଡ଼ନ୍ତି ନାହିଁ । ପଣ୍ଡିତଙ୍କର

ପଚଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ

ଏହି ଉପକାର ବଦଳରେ ସେମାନେ ତାଙ୍କୁ ତାଙ୍କ ଡକାୟତି ଧନରୁ କିଛି ଦେଇ ଦିଅନ୍ତି ।

ଏମିତି କିଛିଦିନ କଟିଗଲା । ଧନ ପାଇବା ଯୋଗୁ ତାଙ୍କର ଲୋଭ ବଢ଼ିଗଲା । ଦିନେ ସେ ଭାବିଲେ ଡାକୁମାନେ ଆଣୁଥିବା ଧନରୁ ମାତ୍ର ଦଶୋଟି ମୁଦ୍ରା ସେମାନେ ପଣ୍ଡିତଙ୍କୁ ପାରିଶ୍ରମିକ ଭାବରେ ଦେଉଛନ୍ତି । ଯଦି ସେ ନିଜେ ଡାକୁଦଳରେ ମିଶି ଚୋରି କରନ୍ତେ ତେବେ ତ ତାଙ୍କର ଗୋଟାଏ ବଡ଼ ଅଂଶ ମିଳନ୍ତା । ତା'ପରେ ଟଙ୍କା ଏକାଠି କରି ସେ ତାଙ୍କ ଝିଅର ବିବାହ ଦିଅନ୍ତେ ।

ଏକଥା ମନରେ ବିଚାର କରି ଦିନେ ସେ ଡାକୁଦଳଙ୍କୁ କହିଲେ, "ଭାଇମାନେ, ତୁମେମାନେ ଚୋରି କରିବାକୁ ଯିବାବେଳେ ମୋତେ ମଧ୍ୟ ସାଙ୍ଗରେ ନେଇଯାଅ । ତେବେ ମୁଁ ସମୁଦାୟ ଧନରୁ ମୋ ଅଂଶଟା ପାଇ ପାରିବି ।"

ଡାକୁମାନେ କହିଲେ, "ପଣ୍ଡିତଜୀ, ଏ କୁକର୍ମ କାହିଁକି ଆପଣଙ୍କ ପରି ଜ୍ଞାନୀ ଲୋକ କରିବେ ? ଆପଣଙ୍କର ଯଦି ଟଙ୍କା ଦରକାର ତେବେ ଆମେ ଆପଣଙ୍କୁ ଏକହଜାର ମୁଦ୍ରା ଦେଇଦେବୁ, ଆପଣ ଝିଅର ବିବାହ କରାଇ ଦିଅନ୍ତୁ ।"

ଶାସ୍ତ୍ରୀ କହିଲେ, "ନା, ନା, କାଲି ଏକାଦଶୀର ଶୁଭ ମୁହୂର୍ତ୍ତରେ କାର୍ଯ୍ୟ ଉତ୍ତର ଦିଗରେ ହେବ । ସେଥିରେ କେବଳ ଲାଭହିଁ ଲାଭ । ମୁଁ ତ ନିଶ୍ଚୟ ତୁମ ସହିତ ଯିବି ।"



"ପଣ୍ଡିତଜୀ, ଆପଣ ଜାଣିଶୁଣି କାହିଁକି ଏତେ କାମ ଓ ଏତେ କଷ୍ଟ କରିବେ ? ଏ କାମ ସର୍ବଦା ବିପଦପୂର୍ଣ୍ଣ । ବରଂ କାଲି ଆମେ ଯାହା ପାଇବୁ ସବୁ ଆପଣଙ୍କୁ ଆଣି ଦେଇଦେବୁ ।" ଡାକୁମାନେ ବୁଝାଇଲେ, କିନ୍ତୁ ପଣ୍ଡିତଜୀ ନଛୋଡ଼ ବନ୍ଧା । ଶେଷରେ ସେ ଡାକୁଙ୍କ ସହିତ ଚଲେ । ପୂର୍ବ ଯୋଜନା ଅନୁସାରେ ଶାସ୍ତ୍ରୀଜୀ ଓ ଅନ୍ୟ ସାତଜଣ ମିଶି ଶୁଭ ମୁହୂର୍ତ୍ତ ଦେଖି ଉତ୍ତର ଦିଗକୁ ଚୋରି କରିବାକୁ ଗଲେ । ଗୋଟିଏ ଗ୍ରାମରେ ପହଞ୍ଚି, ସବୁଠାରୁ ଧନବାନ ବ୍ୟକ୍ତି ରଙ୍ଗନାଥଙ୍କ ଘରେ ସେମାନେ ପଶିଲେ ।

ସେଦିନ ଏକାଦଶୀ ଉପବାସ ଥାଏ। ପରଦିନ ଦ୍ୱାଦଶୀ ପାରିଦ୍ଧଣ ପାଇଁ ସମସ୍ତ ଖାଦ୍ୟଦ୍ରବ୍ୟ ସଜଡ଼ା ହୋଇ ରଖା ହୋଇଥାଏ। ଘରର ସମସ୍ତ ଲୋକ ଉପବାସରେ ଶୋଇ ପଡ଼ିଥା'ନ୍ତି। ଡାକୁମାନେ ବହୁତ ଧନସମ୍ପତ୍ତି ଲୁଟି ନେଲେ। ଶାସ୍ତ୍ରୀଙ୍କୁ ଖୋଜିବାବେଳକୁ ସେ ଦେବଘରେ ବସି ଖାଦ୍ୟ ସବୁ ସଜାଉଛନ୍ତି। ସେ ଡାକୁମାନଙ୍କୁ ଦେଖି କହିଲେ, "ହାଁ ହାଁ, ଏ ଘର ଭିତରେ ପଶନାହିଁ। ସବୁ ଖାଦ୍ୟ ଅପବିତ୍ର ହୋଇଯିବ। ଟିକିଏ ଅପେକ୍ଷା କର। ମୁଁ ତୁମକୁ ଖାଦ୍ୟ ଦେଉଛି।" ତା'ପରେ ସେ ପତ୍ର ଖୋଜିବାରେ ଲାଗିଲେ।

ଡାକୁମାନେ ଯେତିକି ଆଶ୍ଚର୍ଯ୍ୟ ହେଲେ, ସେତିକି ବିରକ୍ତ ହେଲେ। "ପଣ୍ଡିତେ! ତମର ପୂରୋହିତଗିରି କରିବାର ବେଳ କ'ଣ ଇଏ? ଶୀଘ୍ର ଆସ, ନହେଲେ ତମେ ବି ମରିବ ଆମକୁ ବି ମାରିବ!"

କିନ୍ତୁ ବ୍ରାହ୍ମଣ ସେମାନଙ୍କ କଥା ଶୁଣି ମଧ୍ୟ କିଛି ବୁଝୁ ନଥାନ୍ତି।

ଡାକୁମାନେ କହିଲେ, "ଯାହା ନେବାର ନେଇ ସାରି ଶିଘ୍ର ବାହାରି ଆସନ୍ତୁ। କେହି ଉଠିପଡିଲେ ସର୍ବନାଶ!" ପଣ୍ଡିତେ କିଛି ନଶୁଣି ପତ୍ର ଖୋଜୁ ଖୋଜୁ ଠାକୁର ଘରେ ପଶିଲେ ଓ ଘିବଲେ, "ଟିକିଏ ଠାକୁରଙ୍କୁ ଭୋଗ ଲଗାଇ ଦିଏଁ।" ତା'ପରେ ଖାଦ୍ୟ ସବୁ ସଜାଇ ଘଣ୍ଟି ବଜାଇ ଭୋଗ ଲଗାଇବାରୁ ଘଣ୍ଟି ଶବ୍ଦରେ ଡାକୁମାନେ ପଳାଇବାର ଚେଷ୍ଟା କରୁଥା'ନ୍ତି।

ଘରର ଲୋକମାନେ ଉଠି ପଡ଼ି ଏପରି ଅବସ୍ଥା ଦେଖି ପଚାରିଲେ, "ତୁମେ କିଏ? ଏଠାକୁ କିପରି ଆସିଲ?" ଭୟରେ ଥରି ଥରି ପଣ୍ଡିତଜୀ ସବୁକଥା କହିଦେଲେ। ରଙ୍ଗନାଥବାବୁ ଦୟାକରି ବ୍ରାହ୍ମଣଙ୍କୁ ଦଶଟି ମୁଦ୍ରା ଦେଇ ତତ୍‌କ୍ଷଣାତ୍ ଚୋରମାନଙ୍କୁ ଖୋଜିବାରେ ଲାଗିଲେ। ଗୋଟିଏ ପରେ ଗୋଟିଏ ସବୁ ଚୋର ଧରାପଡ଼ି ବନ୍ଦୀ ହେଲେ।





## ବରାକୁଡ଼ା

ସମୁଦ୍ରରେ ରହୁଥିବା ବରାକୁଡ଼ା ନାମକ ଏକ ଜଳଚର ଅତ୍ୟନ୍ତ ଭୟଙ୍କର । କିନ୍ତୁ ସେ ଆଁ କରିଥିବା ସମୟରେ ଛୋଟ ଛୋଟ ଜଳଚର ପ୍ରାଣୀ ତା'ର ଦାନ୍ତ ମଧ୍ୟରେ ପଶି ସେଥିରେ ଥିବା ଆହାର ଛୋଟ ଛୋଟ କୀଟମାନଙ୍କୁ ଖାଉଥା'ନ୍ତି ।

## କାଠହଣା ପକ୍ଷୀ

କାଠହଣା ପକ୍ଷୀର ଜିଭ ଲମ୍ବା ଓ ଗୋଜିଆ ହୋଇଥା'ଏ । ତା'ର ମୁଣ୍ଡ ବହୁତ ଟାଣ । ତା'ର ଜିଭ ଭିତରେ ଥାଏ । ଦରକାର ପଡିବା ମାତ୍ରେ ଚଟକରି ଲମ୍ବା ଜିଭ ବଢ଼ାଇ ସେ ପୋକ ସବୁ ଧରି ଖାଏ ।



## ବିଚିତ୍ର କଙ୍କଡ଼ା



ହାର୍ସ ସୁକ୍ରାବ ନାମରେ କଙ୍କଡ଼ାପରି ଗୋଟିଏ ଜୀବ ଥାଏ । ପ୍ରକୃତରେ ସେ କଙ୍କଡ଼ା ନୁହଁ । ପ୍ରାୟ ତିନିଶ ପଚିଶ ଲକ୍ଷ ବର୍ଷ ପୂର୍ବରୁ ଥିବା ଜିକସିଡ୍ ନାମକ ବସ୍ତୁର ଏହା ଏକ ଅନ୍ୟ ରୂପ ।

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ସେପ୍ଟେମ୍ବର ୧୯୮୬ ସଂଖ୍ୟାରେ ପ୍ରକାଶ ପାଇବ



S. B. Takalkar



K. S. Vijayaker

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃର ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଜୁଲାଇ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ଦିଆଯିବ ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ମେ '୮୬ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ପ୍ରତିମା ନୁହେଁ ଏ ଯୁଗଳ ବେଶ !
ଦ୍ୱିତୀୟ ଚିତ୍ର : ଜୀବନ୍ତ ଦିଶଇ ମାଟି ଗଣେଶ !!
ପୁରସ୍କାର ବିଜୟୀ : ଶ୍ରୀ ସୁଧାଂଶୁ ଶେଖର ସାହୁ, ପୁତ୍ରପୁର ।
ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


## ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦
ମନିଅର୍ଡର ପଠାଇବା ଠିକଣା :
ଡଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଙ୍ଗସ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬
ଅନ୍ୟ ଦେଶ ପାଇଁ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାରେ ଲେଖନ୍ତୁ :
ଚନ୍ଦାମାମା ପବ୍ଲିକେଶନ୍ସ, ଚନ୍ଦାମାମା ବିଲ୍ଡିଙ୍ଗସ୍, ବଡପଲନୀ, ମାଡ୍ରାସ-୬୦୦୦୨୬



Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISHWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.

